

ବ୍ରହ୍ମପୁରଠାରେ ଆୟୋଜିତ ସପ୍ତାହ ବ୍ୟାପୀ ମହାରାଜା କୃଷ୍ଣଚନ୍ଦ୍ର
ଗଜପତିଙ୍କ ଜନ୍ମ ଶତବାର୍ଷିକୀ ଉତ୍ସବ ରାଜ୍ୟପାଳ
ଶ୍ରୀ ଯଜ୍ଞଦତ୍ତ ଶର୍ମା ଉଦ୍‌ଘାଟନ କରୁଛନ୍ତି ।



ସୂଚନା ଭବନଠାରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଦ୍ୱାରା ଆୟୋଜିତ
'ଶିଳ୍ପୀ ସମ୍ବର୍ଦ୍ଧନା' ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ସ୍ୱନାମଧନ୍ୟ
କଳାକାରମାନଙ୍କୁ ପୁରସ୍କାର ପ୍ରଦାନ କରୁଛନ୍ତି । ଏହି କାର୍ଯ୍ୟକ୍ରମରେ ସଂସ୍କୃତି
ମନ୍ତ୍ରୀ ଶ୍ରୀ ଶରତକୁମାର କର ଉପସ୍ଥିତ ଅଛନ୍ତି ।

# ଉତ୍କଳ ପ୍ରସଙ୍ଗ

୪୮ ଭାଗ ୧୧ଶ ସଂଖ୍ୟା ଜ୍ୟେଷ୍ଠ ୧୯୧୪ ଶକାବ୍ଦ ଜୁନ୍ ୧୯୯୨

## ସମ୍ପାଦନା ମଣ୍ଡଳୀ



ପ୍ରକାଶନ : ସୂଚନା ଓ ଲୋକ ସମ୍ପର୍କ ବିଭାଗ,
ଓଡ଼ିଶା ସରକାର, ଭୁବନେଶ୍ୱର ।

ମୁଦ୍ରଣ : ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ
(ଫୋଟୋଟାଇପ୍‌ସେଟିଂ ପଦ୍ଧତିରେ ଅକ୍ଷର ସଂଯୋଜିତ)

ବାର୍ଷିକ ଦେୟ : ଟ ୨୦.୦୦
ପ୍ରତି ଖଣ୍ଡ : ଟ ୨.୦୦

# ସୂଚୀ

## ସମ୍ପାଦକୀୟ........

# ସ୍ୱପ୍ନର ସାର୍ଥକ ରୂପାୟନ

ଦ୍ୱିତୀୟ ଇସ୍ପାତ କାରଖାନା ପାଇଁ ଭୂମି ପୂଜା ଉତ୍ସବ ଗତ ମଇ ମାସ ୧୦ ତାରିଖରେ ଯଶପୁରାଠାରେ ଅନୁଷ୍ଠିତ ହୋଇଯାଇଛି । ବାର ହଜାର କୋଟି ଟଙ୍କା ବ୍ୟୟରେ ନିର୍ମିତ ହେବାକୁ ଯାଉଥିବା ଏହି ଅତ୍ୟାଧୁନିକ ଇସ୍ପାତ କାରଖାନାର ପୂର୍ଣ୍ଣାଙ୍ଗ ପ୍ରୋଜେକ୍ଟ ରିପୋର୍ଟ ଆସନ୍ତା ନଅମାସ ଭିତରେ ପ୍ରସ୍ତୁତ କରି ଅକ୍ଟୋବର ମାସ ପରେ ପରେ ନିର୍ମାଣ କାର୍ଯ୍ୟ ଆରମ୍ଭ କରିବା ପାଇଁ କାର୍ଯ୍ୟକ୍ରମ ସ୍ଥିର ହୋଇଛି । ଭାରତର କମ୍ପାନୀ ମେକନ୍ ଏବଂ ଇଂଲଣ୍ଡର ବ୍ରିଟିଶ୍ ଷ୍ଟିଲ୍ କମ୍ପାନୀର ମିଳିତ ସହଯୋଗରେ ଏହି ପ୍ରୋଜେକ୍ଟ ରିପୋର୍ଟ ପ୍ରସ୍ତୁତ କରାଯିବ । ଅତ୍ୟାଧୁନିକ ପ୍ରଣାଳୀରେ ନିର୍ମିତ ହେବାକୁ ଯାଉଥିବା ଏହି ଇସ୍ପାତ କାରଖାନା ସ୍ଥାପନ ପାଇଁ ଆବଶ୍ୟକ ହେଉଥିବା ଏଗାର ହଜାର ଏକର ପରିମିତ ବିସ୍ତୀର୍ଣ୍ଣ ଅଞ୍ଚଳ ଯଶପୁରାଠାରେ ରାଜ୍ୟ ସରକାର ଯୋଗାଇଛନ୍ତି । କେନ୍ଦ୍ର ସରକାରଙ୍କ ପରିବେଶ ମନ୍ତ୍ରଣାଳୟ ଏଥିପାଇଁ ଆବଶ୍ୟକୀୟ ଅନୁମତି ପ୍ରଦାନ ନ କରିବା ପାଇଁ କେତେକ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ ପ୍ରତିରୋଧ କରିଥିବା ସତ୍ତ୍ୱେ ରାଜ୍ୟ ସରକାର ଏ କ୍ଷେତ୍ରରେ ବିଜୟ ହାସଲ କରିଛନ୍ତି ଏବଂ ଭୂମି ପୂଜା ପୂର୍ବରୁ ପରିବେଶ ମନ୍ତ୍ରଣାଳୟ ଆବଶ୍ୟକୀୟ ସ୍ୱୀକୃତି ପ୍ରଦାନ କରିଛନ୍ତି । ଇସ୍ପାତ କାରଖାନା ନିର୍ମାଣ ପାଇଁ ଏହା ଆଉ ଏକ ଶୁଭ ସୂଚନା ।

ଓଡ଼ିଶାର ପୂର୍ବ ଗୌରବର ସ୍ମୃତି ସ୍ୱରୂପ ଏହି ଇସ୍ପାତ କାରଖାନାର ନାମ "କଳିଙ୍ଗ ଷ୍ଟିଲ୍ (ଇଣ୍ଡିଆ) ଲିମିଟେଡ" ରଖାଯାଇଛି ଏବଂ ସେହି ସ୍ଥାନକୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ "କଳିଙ୍ଗ ନଗର" ନାମରେ ନାମିତ କରିଛନ୍ତି ।

ସମଗ୍ର ବିଶ୍ୱରେ ଅତି କମ୍ ସଂଖ୍ୟାରେ ଥିବା ଏଭଳି ବୃହତ୍ ଏବଂ ଅତ୍ୟାଧୁନିକ ଇସ୍ପାତ୍ କାରଖାନାରେ ରାଜ୍ୟର ଯୁବକ ଯୁବତୀମାନଙ୍କୁ ନିଯୁକ୍ତି ସୁବିଧା ଦେବା ପାଇଁ ଆବଶ୍ୟକୀୟ ତାଲିମ ଦିଆଯିବ । ବ୍ୟାପକ ବୃକ୍ଷ ରୋପଣ, ଫୁଲ ଓ ଫଳ ବଗିଚା ପ୍ରଭୃତିରେ ସ୍ଥାନୀୟ ଆଦିବାସୀ ଲୋକ ନିଯୁକ୍ତି ସୁବିଧା ପାଇପାରିବେ ।

ଏହି ଭୂମି ପୂଜା ଉତ୍ସବରେ ଶ୍ରୀ ସ୍ୱରାଜ୍ ପାଲ୍, ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କୁ ଭୂୟସୀ ପ୍ରଶଂସା କରି କହିଥିଲେ ଯେ ବିଜୁବାବୁ କେବଳ ଜଣେ ମୁଖ୍ୟମନ୍ତ୍ରୀ ନୁହନ୍ତି । ବିଜୁବାବୁଙ୍କ ବ୍ୟକ୍ତିତ୍ୱ ମୁଖ୍ୟମନ୍ତ୍ରୀ ଆସନଠାରୁ ବହୁ ଊର୍ଦ୍ଧ୍ୱରେ । ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ନେତା ବିଜୁବାବୁଙ୍କ ଅସାଧାରଣ ବ୍ୟକ୍ତିତ୍ୱ ପାଖରେ ତାଙ୍କୁ କେହି କିଛି ମନା କରିପାରନ୍ତି ନାହିଁ ଏବଂ ସ୍ୱରାଜ ପାଲ୍ ନିଜେ ମଧ୍ୟ ବିଜୁବାବୁଙ୍କ କଥାକୁ ମାନି ନେଇଥିଲେ । ଫଳରେ ଓଡ଼ିଶାର ଆଶୁ ପ୍ରଗତି ପାଇଁ ଏହି ଇସ୍ପାତ୍ କାରଖାନା ନିର୍ମାଣ ସମ୍ଭବ ହେବାକୁ ଯାଉଛି । ବିଜୁବାବୁଙ୍କର ଏକନିଷ୍ଠ ଉଦ୍ୟମ ହିଁ ଦୀର୍ଘ ଦିନର ସ୍ୱପ୍ନକୁ ସାକାର କରିଛି ବୋଲି ଶ୍ରୀ ସ୍ୱରାଜ୍ ପାଲ୍ ଭୂୟସୀ ପ୍ରଶଂସା କରିଥିଲେ ।

ଏହି ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ କହିଥିଲେ ଯେ ତାଙ୍କର ତଥା ରାଜ୍ୟବାସୀଙ୍କର ଦୀର୍ଘ ଦିନର ସ୍ୱପ୍ନ କେବଳ ଜଗନ୍ନାଥଙ୍କ ଅସୀମ କରୁଣା ବଳରେ ଆଜି ସାର୍ଥକ ହେବାକୁ ଯାଉଛି । ଯେଉଁ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ ଏହି ପ୍ରକଳ୍ପ ସମ୍ପର୍କରେ ରାଜ୍ୟବାସୀଙ୍କୁ ବିଭ୍ରାନ୍ତ କରିବାର ଚେଷ୍ଟା କରୁଛନ୍ତି, ସେମାନେ ଓଡ଼ିଶାରେ କିଛି ବଡ଼କାମ ହେଉ, ତାହା ଚାହାନ୍ତି ନାହିଁ ବୋଲି ପ୍ରକାଶ କରି ରାଜ୍ୟର ସମୂହ ସ୍ୱାର୍ଥ ଦୃଷ୍ଟିରୁ ସେମାନେ ଏଭଳି ରାଜ୍ୟର ସ୍ୱାର୍ଥ ପରିପନ୍ଥୀ ଭୂମିକା ଗ୍ରହଣ ନ କରିବା ପାଇଁ ନିବେଦନ କରିଥିଲେ ।

ବାସ୍ତବରେ ଏହା ରାଜ୍ୟବାସୀଙ୍କର ଦୀର୍ଘ ଦିନର ସ୍ୱପ୍ନର ସାର୍ଥକ ରୂପାୟନ । ଓଡ଼ିଶାର ପ୍ରଗତି ପଥରେ ଏହା ଏକ ସ୍ମରଣୀୟ ମାଇଲ୍ ଖୁଣ୍ଟ । ଶେଷରେ ଏତିକି ନିବେଦନ ଯେ, ଏହି ପ୍ରକଳ୍ପ ତଥା ରାଜ୍ୟର ପ୍ରଗତିରେ ପ୍ରତିବନ୍ଧକ ସୃଷ୍ଟି କରିବା ପାଇଁ ରାଜନୈତିକ ପ୍ରଚେଷ୍ଟା ନହେଉ । ୧୯୯୦ ମାର୍ଚ୍ଚ ମାସରେ ବିଜୁବାବୁ ମୁଖ୍ୟମନ୍ତ୍ରୀ ଭାବେ ଦାୟିତ୍ୱ ନେଇ ପ୍ରଥମେ ଆହ୍ୱାନ ଦେଇଥିଲେ ଯେ ଆମେ ସମସ୍ତେ ସବୁ ରାଜନୈତିକ ମତଭେଦକୁ ଭୁଲିଯାଇ ଦଳମତ ନିର୍ବିଶେଷରେ ସମସ୍ତେ ଗୋଟିଏ ଦଳ ହୋଇ ରାଜ୍ୟର ପ୍ରଗତିର [illegible] ଆଗେଇ ନେବା ।

ବର୍ତ୍ତମାନ ବିଜୁବାବୁଙ୍କର ସେହି ଆହ୍ୱାନକୁ ସମସ୍ତେ ଗ୍ରହଣ କରିବା ଉଚିତ୍ । ସବୁ ଭେଦଭାବ ଭୁଲି ସମସ୍ତେ ବିଜୁବାବୁଙ୍କ ଉଦ୍ୟମ ପଛରେ ସମବେତ ହେଲେ ଅଚିରେ ଓଡ଼ିଶାର ପୂର୍ବ ଗୌରବ ପୁଣି ପ୍ରତିଷ୍ଠିତ ହୋଇ ପାରିବ, ସେଥିରେ ସନ୍ଦେହ ନାହିଁ ।



# ନୂତନ କୋଣାର୍କ ନିର୍ମାଣ

**ଶ୍ରୀ ବିଜୁ ପଟ୍ଟନାୟକ**

ଅତୀତରେ ଶିଳ୍ପୀମାନଙ୍କୁ ସମ୍ମାନ ଦେବା ଏକ ରାଜକୀୟ ଧର୍ମ ଥିଲା। ରାଜା ରାଜୁଡ଼ା ଶାସନର ଅବସାନ ହେଲା। ତା' ପରେ ଯେଉଁ ସରକାର ଗଠିତ ହେଲା, ଏହି ଦାୟିତ୍ୱ ସେ ଗ୍ରହଣ କରିବା ସ୍ୱାଭାବିକ। ଶିଳ୍ପର ବିକାଶ ଓ ପ୍ରୋତ୍ସାହନ ଏବଂ ଶିଳ୍ପୀମାନଙ୍କୁ ଉପଯୁକ୍ତ ସମ୍ମାନ ଦେବା ଯେ କୌଣସି ସରକାରଙ୍କର ଏକ ମୁଖ୍ୟ କର୍ତ୍ତବ୍ୟ। ଶିଳ୍ପୀ ଜଣେ ସ୍ରଷ୍ଟା। ତେଣୁ ସମାଜ ଓ ସରକାରଙ୍କ ପକ୍ଷରୁ ସେମାନଙ୍କୁ ସମୁଚିତ ସମ୍ମାନ ପ୍ରଦର୍ଶନ କରିବା ଆବଶ୍ୟକ। ସରକାରଙ୍କ ସର୍ବୋଚ୍ଚ କର୍ତ୍ତାଙ୍କ ଅପେକ୍ଷା ଜଣେ ଶିଳ୍ପୀର ସ୍ଥାନ କୌଣସିମତେ ନ୍ୟୁନ ନୁହେଁ।

ଆଜିର ଭୁବନେଶ୍ୱର ନଗରୀ, ପ୍ରାୟ ଚାଳିଶ ବର୍ଷ ତଳେ ଏହା ଥିଲା ଏକ ନିଘଞ୍ଚ ଜଙ୍ଗଲ। ୧୯୪୬ ମସିହାରେ ଯେତେବେଳେ ବ୍ରିଟିଶ୍ ଜେଲରୁ ଆମେ ଖଲାସ ହେଲୁ, ସେତେବେଳେ ଏଠାକୁ ଇଂରେଜମାନେ ଶୀକାର ପାଇଁ ଆସୁଥିଲେ, ସେତେବେଳେ ଏହି ଜଙ୍ଗଲରେ ଥିଲେ ବାଘ, ଭାଲୁ, ହାତୀ। ପାଖରେ ଥିଲା ଛୋଟ ଗାଁଟିଏ – ଆଜିର ପୁରୁଣା ଭୁବନେଶ୍ୱର। ଏହାର ଅନ୍ୟ ନାମ ଏକାମ୍ର କାନନ। ଅତୀତରେ ଓଡ଼ିଆ ଶିଳ୍ପୀର ନିହଣ ମୁନରେ ଦିନେ ଏହି ସହରରେ ଗଢ଼ି ଉଠିଥିଲା ଏକ ସହସ୍ର ମନ୍ଦିର। ଏହି ମନ୍ଦିରମାଳିନୀ ସହରଟିର ପରିବେଶ ଥିଲା ଶାନ୍ତ ଓ ସୁନ୍ଦର। ଭୁବନେଶ୍ୱରର ସ୍ମୃତି ପାଖରେ, ଅନ୍ୟ ସ୍ଥାନରେ କେଉଁଠି ଏହି ସବୁ ମନ୍ଦିର ଅଛି, ଆଜି ପର୍ଯ୍ୟନ୍ତ ତାହା ସବୁ ଲୋକ ଲୋଚନକୁ ଆସିପାରିନି। ଆଜିର ଶିଳ୍ପୀ ଓ ପ୍ରତ୍ନତତ୍ତ୍ୱବିତ୍‌ମାନେ ଏହି ସବୁ ମନ୍ଦିରକୁ ଖୋଜି ବାହାର କରିବା ଆବଶ୍ୟକ।

ଏହି ପ୍ରାଚୀନ ସହର, ମନ୍ଦିରମାଳିନୀ ଏକାମ୍ର କାନନ, ଯାହା ଜାତୀୟ ପ୍ରାଚୀନ ଶିଳ୍ପର ଏକ ପ୍ରତୀକ ସେଠାରେ ଆମର ପ୍ରାଚୀନ ଶିଳ୍ପକଳା ଓ ସଂସ୍କୃତିକୁ ପୁନର୍ଜୀବିତ କରିବା ପାଇଁ, ଏକ କଳା କେନ୍ଦ୍ର ପ୍ରତିଷ୍ଠା କରିବାର ଆବଶ୍ୟକତା ରହିଛି। କଳାର ଉତ୍କର୍ଷତା ଯୋଗୁଁ ଆମର ନାମ ଥିଲା ଉତ୍କଳ, ଯେଉଁ ପ୍ରାଚୀନ କଳିଙ୍ଗର କଳାର ନିଦର୍ଶନ ଆଜି ମଧ୍ୟ ଦକ୍ଷିଣ-ପୂର୍ବ ଏସିଆରେ ଜୀବିତ, ସେହି ମହାନ କଳାର ପୁନରୁଦ୍ଧାର ପାଇଁ, ପୁନର୍ଗଠନ ପାଇଁ ଏହି କେନ୍ଦ୍ରରେ କାର୍ଯ୍ୟ ହେବ। ଏହି କଳା କେନ୍ଦ୍ରର ପରିବେଶ ହେବ ଶାନ୍ତ। ଏଠାରେ ମଟର ଗାଡ଼ି ଚାଲିବନି। ଅନବରତ ହର୍ଣ୍ଣ ବାଜି ଏହି ଅଞ୍ଚଳର ଶବ୍ଦ ପରିବେଶ ପ୍ରଦୂଷିତ ହେବନି। ଏଠାରେ ପୁଣି ପ୍ରତିଷ୍ଠିତ ହେବ ପ୍ରାଚୀନ କାଳର ସୁଶାନ୍ତ, ସୁନ୍ଦର ପରିବେଶ। ସର୍ବ ଭାରତୀୟ ସ୍ତରରେ, ସବୁ ଅଞ୍ଚଳର ଲୋକମାନଙ୍କ ପାଇଁ ଏହି କଳା କେନ୍ଦ୍ର ହେବ ଏକ ଆକର୍ଷଣୀୟ ସ୍ଥାନ। ଓଡ଼ିଶାର କଳା ଓ ସଂସ୍କୃତି ସମ୍ପର୍କରେ ଜ୍ଞାନ ଆହରଣ ପାଇଁ ଏହି କେନ୍ଦ୍ର ହେବ ଦେଶବାସୀଙ୍କ ନିମନ୍ତେ ଏକ ପ୍ରଶିକ୍ଷଣ ସ୍ଥଳ।

ଆମର ଐତିହ୍ୟ ଓ ସଂସ୍କୃତି ଦିନେ ଅତି ମହାନ୍ ଥିଲା, ଏଥିପାଇଁ କେବଳ ଗର୍ବ ଅନୁଭବ କରିବା ଯଥେଷ୍ଟ ନୁହେଁ। ଆମର ଅତୀତର ଏହି ପରମ୍ପରାକୁ ଆଜି ଏକ ନୂତନ ରୂପ ଦେବାକୁ ହେବ, ତାହାକୁ ପୁନର୍ଜୀବିତ କରିବାକୁ ହେବ। ଯାହାକୁ ଦେଖି ସମଗ୍ର ବିଶ୍ୱ ଚକିତ ହେବ। ଉତ୍କଳର ମହାନ୍ କଳା, ସଂସ୍କୃତି ଓ ଐତିହ୍ୟ ସମଗ୍ର ଭାରତବର୍ଷ ପାଇଁ ଯେ ଏକ ଗର୍ବର ଆଧାର ତାହା ବିଶ୍ୱବାସୀ ଅନୁଭବ କରି ପାରିବେ। ତାହା ହିଁ ହେବ ଉତ୍କଳୀୟ କଳା ଓ ସଂସ୍କୃତିର ଉପଯୁକ୍ତ ସ୍ୱୀକୃତି। ଆମର ସଙ୍ଗୀତ, ନୃତ୍ୟ, ଚିତ୍ରକଳା, ଭାସ୍କର୍ଯ୍ୟ ପ୍ରଭୃତି ସବୁ ରହିଛି। ଆଜି ମଧ୍ୟ ଏ ସବୁ କ୍ଷେତ୍ରରେ କୁଶଳୀ ଶିଳ୍ପୀ ଆମ ରାଜ୍ୟରେ ରହିଛନ୍ତି। ଏହି ସବୁ ଶ୍ରେଣୀର ଶିଳ୍ପୀର ଶିଳ୍ପୀଙ୍କୁ ଏକତ୍ରିତ କରିବାକୁ ହେବ ଏହି କେନ୍ଦ୍ରରେ ସେମାନେ ସମସ୍ତେ ଏଇଠି ହେବେ କର୍ମରତ।

ଆଜି ଦିଲ୍ଲୀରେ ଏପରି ଏକ ସର୍ବ ଭାରତୀୟ କେନ୍ଦ୍ର ପ୍ରତିଷ୍ଠିତ ହୋଇଛି। ବିଭିନ୍ନ ରାଜ୍ୟର କଳାକାର ଓ ଶିଳ୍ପୀମାନେ ସେଠାକୁ ଯାଉଛନ୍ତି। ଓଡ଼ିଶାର ମଧ୍ୟ ଅନେକ ଶିଳ୍ପୀ ଏହି କେନ୍ଦ୍ରକୁ ଯାଇଛନ୍ତି। କିଏ ପଥର କାମ, କିଏ କାଠ କାମ, କିଏ ବା ହସ୍ତ ଶିଳ୍ପ କରିବାରେ ନିୟୋଜିତ ସେଠାରେ। ମୁଁ ଦେଖିଛି ସେଠାରେ ଓଡ଼ିଆ ଶିଳ୍ପୀର ସୃଷ୍ଟି ବାସ୍ତବରେ କି ସୁନ୍ଦର, କି ଅନବଦ୍ୟ।

ଆମକୁ ଅନୁରୂପ ପଦକ୍ଷେପ ନେବାକୁ ହେବ। ଆମର ମହାନ୍ ଶିଳ୍ପ, କଳା ଓ ସଂସ୍କୃତିକୁ ଉଜ୍ଜୀବିତ୍ କରିବାକୁ ହେବ।

କୋଣାର୍କଠାରେ ଦିନେ ଗଢ଼ା ଯାଇଥିଲା ବିଶ୍ୱ ବିଖ୍ୟାତ ସୂର୍ଯ୍ୟ ମନ୍ଦିର। ଯାହା ବିଶ୍ୱର କଳା ଓ ଭାସ୍କର୍ଯ୍ୟ କ୍ଷେତ୍ରରେ ଏକ

ବିସ୍ମୟମୟ ସୃଷ୍ଟି । ଆଜି ଏହି ମନ୍ଦିର ଧୀରେ ଧୀରେ ଭାଙ୍ଗି ଯାଉଛି । ୩୦ ବର୍ଷ ତଳେ କୋଣାର୍କ ମନ୍ଦିରର ସୌନ୍ଦର୍ଯ୍ୟ କ୍ରମେ ମଳିନ ହୋଇଯାଉଛି । ସୁନ୍ଦର ସୁନ୍ଦର ମୂର୍ତ୍ତିମାନେ ଆଜି ତଳେ ପଡ଼ି ରହିଛନ୍ତି । ଯେଉଁ କୋଣାର୍କ ମନ୍ଦିର ନିର୍ମାଣ ପାଇଁ ରାଜା ନରସିଂହ ଦେବ ରାଜ୍ୟର ୧୨ ବର୍ଷର ରାଜସ୍ୱ ବ୍ୟୟ କରିଥିଲେ, ୧୨ ହଜାର ଶିଳ୍ପୀ ୧୨ ବର୍ଷ ପରିଶ୍ରମ କରି ଯେଉଁ ମନ୍ଦିର ତିଆରି କରିଥିଲେ, ଆଜି ତାହାର ପୁନଃନିର୍ମାଣ କ'ଣ ସମ୍ଭବପର ? କୌଣସି ଗଣତାନ୍ତ୍ରିକ ସରକାର ରାଜ୍ୟର ୧୨ ବର୍ଷର ରାଜସ୍ୱ ଏପରି ଏକ ମନ୍ଦିର ନିର୍ମାଣ ପାଇଁ ବ୍ୟୟ କରିବା କଦାପି ସମ୍ଭବପର ନୁହେଁ । କିନ୍ତୁ ସମଗ୍ର ଜାତି ଯଦି ଚାହେଁ, ସମଗ୍ର ରାଜ୍ୟବାସୀ ଯଦି ଉଦ୍ୟମ କରନ୍ତି, ସମସ୍ତେ ଯଦି ହାତ ମିଳାଇ ଏଥିପାଇଁ କାମ କରନ୍ତି, ତେବେ କୋଣାର୍କ ମନ୍ଦିର ନିର୍ମାଣ ପାଇଁ ୧୨ ବର୍ଷର ରାଜସ୍ୱ ବ୍ୟୟ କରିବାର ଆବଶ୍ୟକତା ରହିବନି । ଲୋକ ଶକ୍ତି ତାକୁ ନିଜେ ନିଜେ ତିଆରି କରିଦେବେ ।

ମୋର ଦୃଢ଼ ବିଶ୍ୱାସ ଆମର ପ୍ରାଚୀନ କଳା, ଭାସ୍କର୍ଯ୍ୟ, କାରୁକାର୍ଯ୍ୟ, ସଂସ୍କୃତି ଓ ଐତିହ୍ୟ ଦିନେ ଆମ ଲୋକଙ୍କୁ ଏପରି ଭାବେ ଉଦ୍‌ବୁଦ୍ଧ କରିବ ଯେ ସେମାନେ ଏକ ନୂତନ କୋଣାର୍କ ନିର୍ମାଣ ପାଇଁ ଆଗଭର ହେବେ । ଏଥିପାଇଁ ହାତରେ ହାତ ମିଳାଇ କାମ କରିବେ । ଏହି ନୂତନ କୋଣାର୍କ ହେବ ମୋର ପ୍ରସ୍ତାବିତ ଉତ୍କଳୀୟ ଓ କଳିଙ୍ଗ କଳାର କେନ୍ଦ୍ର । ଯେଉଁଠାରେ ଆମର କାରୁକାର୍ଯ୍ୟମୟ କଳା, ସଙ୍ଗୀତ, ନାଟକ, ନୃତ୍ୟ ପ୍ରଭୃତି ପୁଣି ଅତୀତର ଉତ୍କର୍ଷତା ଫେରି ପାଇପାରିବ । ସମଗ୍ର ବିଶ୍ୱରେ ଆମେ ପୁଣି ଆମର ଶୀର୍ଷତା ପ୍ରତିପାଦିତ କରିପାରିବା । ଏଠାରେ କିଏ କବିତା ଲେଖିବ ତ, କିଏ ଗଦ୍ୟ ବା ନାଟକ ରଚନା କରିବ, କିଏ ଚିତ୍ର କଳା ଅଙ୍କନ କରିବ ତ କିଏ ନିହାଣ ମୁନରେ ପଥର ବୁକୁରେ ନୂତନ କାବ୍ୟ ରଚନା କରିବ । ସମସ୍ତ ଶିଳ୍ପ ଓ ସଂସ୍କୃତିର ପୁନ... ବିକାଶ ପାଇଁ ଏଠାରେ ସୁଯୋଗ ରହିବ ।

ଏହି କେନ୍ଦ୍ର ପ୍ରତିଷ୍ଠା ପାଇଁ, ଏହି ନୂତନ କୋଣାର୍କ ମନ୍ଦିର ନିର୍... ପାଇଁ ଆବଶ୍ୟକ ଅଜସ୍ର ଅର୍ଥ । ଓଡ଼ିଶା ସରକାରଙ୍କର ଅର୍ଥା... ଥିଲେ ମଧ୍ୟ ଏହି କେନ୍ଦ୍ର ପ୍ରତିଷ୍ଠା ପାଇଁ ସରକାରଙ୍କର ସହାୟତା ... ସମର୍ଥନର ଅଭାବ ରହିବନି । ବିଭିନ୍ନ ବିଭାଗରୁ ବ୍ୟୟ ... କରି ଏଥି ନିମନ୍ତେ ଅର୍ଥ ମୁଁ ଯୋଗାଇ ଦେବି । କିନ୍ତୁ ... ସାଫଲ୍ୟ ଏହି ଜାତି ଉପରେ, ଏହି ରାଜ୍ୟବାସୀଙ୍କ ... ସାହାଯ୍ୟ ଓ ସମର୍ଥନ ଉପରେ ନିର୍ଭରଶୀଳ ।

ଏହି ପରିପ୍ରେକ୍ଷୀରେ ମୁଁ ଆମର ଜାତୀୟ ଚରିତ୍ର ... ସୂଚନା ଦେବା ସମୀଚୀନ ହେବ । ଆମେ ... ସମାଲୋଚନା ନକରି ଏକତାବଦ୍ଧ ଭାବେ କାମ କରିବାକୁ ... ଆମେ ଭାବୁ "ମୁଁ ଯାହା ଜାଣିଛି ତାହା ପୂର୍ଣ୍ଣାଙ୍ଗ, ମୁଁ ଯାହା କହୁଛି ... କରୁଛି ତାହା ହିଁ ଠିକ୍, ଅନ୍ୟମାନେ କିଛି ଜାଣି ନାହାନ୍ତି" ... ବାସ୍ତବରେ ଏକ ମୁଦ୍ରା ଦୋଷ । ଯେତେବେଳେ ... ପରସ୍ପରର ନିନ୍ଦା କରି ଆସ ପୌଢ଼ି ଦେଖାନ୍ତି, ସେତେବେଳେ ... ପତନୋନ୍ମୁଖୀ ହୁଏ । ଜଣକୁ ନେଇ ଗଣ, ଲୋକଙ୍କୁ ... ଜାତି । ତେଣୁ ଓଡ଼ିଆ ଜାତିକୁ ପୁଣି ଉଠାଇବାକୁ ହେଲେ ଆ... ଗୌରବର ପୁନରୁଦ୍ଧାର କରିବା ପାଇଁ ହେଲେ ଅନ୍ୟ... ସମାଲୋଚନା କରି ତାକୁ ଖସାଇବାକୁ ଚେଷ୍ଟା ନକରି ସେମା... ଯେପରି ଉପରକୁ ଉଠି ପାରିବେ ସେଥିପାଇଁ ଉଦ୍ୟମ କରିବାକୁ ହେବ । ତାହା ହେଲେ ହିଁ ଆମେ ପୁଣି ସମଗ୍ର ବିଶ୍ୱରେ ନିଜ... ଶୀର୍ଷ ସ୍ଥାନରେ ଅବସ୍ଥାପିତ କରିପାରିବା । ପୁଣି ଆମେ ... ପାରିବା ଆମର ନୂତନ କୋଣାର୍କ ।




ଭୁବନେଶ୍ୱରଠାରେ ଆୟୋଜିତ ଆନ୍ତର୍ଜାତିକ ଶ୍ରମିକ ଦିବସ ଅବସରରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଏକ ବିରାଟ ଜନ ସମାବେଶରେ ଅଭିଭାଷଣ ଦେଉଛନ୍ତି ।



# କଳିଙ୍ଗ ସାହସିକା

**ଶ୍ରୀ ଶରତ କୁମାର କର**

୧୮୫୭ ମସିହାର ସିପାହୀ ବିଦ୍ରୋହକୁ ଭାରତର ସ୍ୱାଧୀନତା ସଂଗ୍ରାମର ପ୍ରଥମ ଆନ୍ଦୋଳନ ବୋଲି ଐତିହାସିକମାନେ ମତ ପ୍ରକାଶ କରିଛନ୍ତି । କିନ୍ତୁ ଏହି ସିପାହୀ ବିଦ୍ରୋହର ବହୁ ପୂର୍ବରୁ ଓଡ଼ିଶାର ପାଇକ ପୁଅମାନେ "ପାଇକ ବିଦ୍ରୋହ" କରି ଯେଉଁ ବୀରତ୍ୱର ପରିଚୟ ଦେଇଛନ୍ତି ତାହା ଓଡ଼ିଶା ଇତିହାସର ଏକ ଗୌରବମୟ ଅଧ୍ୟାୟ । ସେହି ଗୌରବମୟ ଅଧ୍ୟାୟର ସ୍ମୃତି ଚାରଣରେ ଭାରତର ଶେଷ ସ୍ୱାଧୀନ ଦୁର୍ଗ ଗଡ଼ଖୋର୍ଦ୍ଧାଠାରେ ପ୍ରତି ବର୍ଷ ଏକ "ରାଜ୍ୟ ସ୍ତରୀୟ ପାଇକ ଆଖଡ଼ା ସମାରୋହ" କରିବା ପାଇଁ ଆମ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ଆଗ୍ରହ ପ୍ରକାଶ କରିଥିଲେ । ମୁଖ୍ୟମନ୍ତ୍ରୀଙ୍କ ପରାମର୍ଶକ୍ରମେ ଏହି ପାଇକ ଆଖଡ଼ା ଦଳକୁ ପୁନର୍ଜୀବିତ କରି ସେମାନଙ୍କ ମନରେ ପୁଣି ସାହସ ସଞ୍ଚାର ଆଣିବା ପାଇଁ ସେହି ଐତିହାସିକ ପୀଠ ବରୁଣେଇ ପାହାଡ଼ ତଳେ ଏପ୍ରିଲ୍ ଦଶ ତାରିଖଠାରୁ ବାର ତାରିଖ ପର୍ଯ୍ୟନ୍ତ ତିନି ଦିନ ବ୍ୟାପୀ ରାଜ୍ୟ ସ୍ତରୀୟ ପାଇକ ଆଖଡ଼ା ସମାରୋହ ପ୍ରବଳ ଉତ୍ସାହ ସହ ଅନୁଷ୍ଠିତ ହୋଇଯାଇଛି ।

କଳିଙ୍ଗ ସାହସିକା — ଏହା ପୁରାଣ ପ୍ରସିଦ୍ଧ କଥା । କଳିଙ୍ଗ ଜାତି ହେଉଛି ସାହସୀ ଏବଂ ପ୍ରକୃତରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ହେଉଛନ୍ତି ସେହି ସାହସର ମୂର୍ତ୍ତିମନ୍ତ ପ୍ରତୀକ । ତାଙ୍କୁ ପ୍ରକୃତ କଳିଙ୍ଗ କୁମାର କିମ୍ବା ଆଧୁନିକ ଖାରବେଳ କହିବା ଅତ୍ୟୁକ୍ତି ହେବ ନାହିଁ । ଯେଉଁ କଳିଙ୍ଗ ନାମ ଉଚ୍ଚାରଣ କଲେ ରକ୍ତ ଉନ୍ମାଦିତ ହୋଇ ଉଠେ, ଯେଉଁଥିରେ ପୂର୍ବ ଗୌରବମୟ ଇତିହାସ ଆଖି ଆଗରେ ନାଚି ଉଠେ ଏବଂ ଭବିଷ୍ୟତ ତିଆରି କରିବା ପାଇଁ ପ୍ରେରଣା ମିଳେ ସେହି କଳିଙ୍ଗବାସୀଙ୍କୁ ପୁନର୍ଜୀବିତ କରିବା ପାଇଁ ଓ କଳିଙ୍ଗର ପୁନର୍ବିନ୍ୟାସ କରିବା ପାଇଁ ବିଜୁବାବୁ ଯେତେବେଳେ ଓଡ଼ିଶାରେ ତଥା ଭାରତରେ ଶିଳ୍ପୀକରଣ କରୁଥିଲେ ସେତେବେଳେ ପ୍ରତ୍ୟେକ ଶିଳ୍ପର ନାମ ରଖୁଥିଲେ "କଳିଙ୍ଗ" । କେବଳ ସେତିକି ନୁହେଁ, ପୃଥିବୀର ଏକ ବିଶିଷ୍ଟ ପୁରସ୍କାର ହେଉଛି "କଳିଙ୍ଗ ପୁରସ୍କାର" । ବିଶିଷ୍ଟ ବୈଜ୍ଞାନିକମାନଙ୍କୁ ସମ୍ମାନିତ କରିବା ପାଇଁ ଏହି ପୁରସ୍କାରକୁ ଜାତିସଂଘ ହାତରେ ଅର୍ପଣ କରିଛନ୍ତି ଯାହା ବହୁ ବର୍ଷ ଧରି ବିଶିଷ୍ଟ ବୈଜ୍ଞାନିକମାନେ ପାଇ ଆସୁଛନ୍ତି । ନୋବେଲ୍ ପୁରସ୍କାର ଭଳି ଏହି କଳିଙ୍ଗ ପୁରସ୍କାର ମଧ୍ୟ ଅତି ଜନପ୍ରିୟ ଓ ଆଦୃତ ପୁରସ୍କାର ।

ତେଣୁ ସେହି କଳିଙ୍ଗର ଇତିହାସକୁ ସିଂହାବଲୋକନ କରି କଳିଙ୍ଗର ଯେଉଁଠି ଯେଉଁ ସ୍ମୃତି କାଳ ଗର୍ଭରେ ବିସ୍ମୃତ ହୋଇଯାଇଛି ସେ ସବୁକୁ ପୁନର୍ଜୀବନ ଦେବା ପାଇଁ ଓ ସେ ସବୁର ପୁନରୁତ୍ଥାନ ପାଇଁ କଳିଙ୍ଗର ନୌ–ବାଣିଜ୍ୟକୁ ମନେ ପକାଇବା ପାଇଁ ବିଜୁବାବୁ ତିଆରି କଲେ ପାରାଦ୍ୱୀପ ବନ୍ଦର । ତ୍ରେତୟା ଯୁଗରେ ରାମଚନ୍ଦ୍ରଙ୍କ ପଦ ସ୍ପର୍ଶରେ ଅହଲ୍ୟା ପୁନର୍ଜୀବନ ଲାଭ କଲା ଭଳି ବିଜୁବାବୁ ୧୯୬୨ ମସିହାରେ ମୁଖ୍ୟମନ୍ତ୍ରୀ ଥିଲାବେଳେ ଯେଉଁ ଯେଉଁ ଶିଳ୍ପ ସୃଷ୍ଟି କରିଯାଇଥିଲେ, ଆଜି ୩୦ ବର୍ଷ ପରେ ପୁଣି ମୁଖ୍ୟମନ୍ତ୍ରୀ ହେବା ପରେ ତାଙ୍କରି ସ୍ପର୍ଶରେ ଅଧିକରୁ ଅଧିକ ଶିଳ୍ପ ଗଢ଼ି ଉଠିବାରେ ଲାଗିଛି ।

ଜଡ଼ ଅବସ୍ଥାରେ ଥିବା ଏହି ପବିତ୍ର ଭୂମି ଓଡ଼ିଶାର ସାଂସ୍କୃତିକ କାର୍ଯ୍ୟକ୍ରମ, ଓଡ଼ିଶାର ଶୌର୍ଯ୍ୟ, ବୀର୍ଯ୍ୟ, ଧୈର୍ଯ୍ୟ, ସାହସ, କଳା, ସଂସ୍କୃତି, ନୃତ୍ୟ ସବୁ ଶକ୍ତି ତାଙ୍କରି ସ୍ପର୍ଶରେ ପୁଣି ଥରେ ପୁନର୍ବିନ୍ୟାସ ପାଉ, ପୁନର୍ଜୀବିତ ହେଉ ଏହି କାମନା କରି ଗତ ଦୁଇ ବର୍ଷ ଧରି ଖୋର୍ଦ୍ଧାଠାରେ "ପାଇକ ଆଖଡ଼ା ସମାରୋହ" ଅନୁଷ୍ଠିତ ହୋଇ ଆସୁଛି । ରାଜ୍ୟ କ୍ରୀଡ଼ା ନିର୍ଦ୍ଦେଶାଳୟ ପକ୍ଷରୁ ଆୟୋଜିତ ଏହି ପାଇକ ଆଖଡ଼ା ସମାରୋହରେ ରାଜ୍ୟର ପ୍ରତ୍ୟେକ କୋଣରୁ ପାଇକମାନେ ଆସି ଆନନ୍ଦ ଉଲ୍ଲାସର ସହ ଅଂଶ ଗ୍ରହଣ କରୁଛନ୍ତି । କେବଳ ସେତିକି ନୁହେଁ, ଏହି ଖେଳ କସରତ ଶାରୀରିକ ଶିକ୍ଷା, ସମର ଅଭ୍ୟାସ ଏ ସବୁକୁ ଶିକ୍ଷା ଦେବା ପାଇଁ ମୁଖ୍ୟମନ୍ତ୍ରୀଙ୍କ ପରାମର୍ଶକ୍ରମେ ଖୋର୍ଦ୍ଧାଠାରେ ଗୋଟିଏ "ପାରମ୍ପରିକ ଶାରୀରିକ ଓ ସାମରିକ ଶିକ୍ଷା ଏକାଡେମୀ" କରିବା ପାଇଁ ନିଷ୍ପତ୍ତି ହୋଇସାରିଛି ଏବଂ ଅତିଶୀଘ୍ର ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ହାତରେ ଏହି ଅନୁଷ୍ଠାନର ଶୁଭାରମ୍ଭ ହେବ ।

ବିଜୁବାବୁଙ୍କ ପ୍ରଶସ୍ତି ଗାନ କରିବା ଉଦ୍ଦେଶ୍ୟ ନଥିଲେ ବି ଏଇଟି ସଂକ୍ଷେପରେ ସ୍ମରଣ କରାଇ ଦେବା ପ୍ରାସଙ୍ଗିକ ହେବ ଯେ ଯେଉଁ ବିଜୁ ପଟ୍ଟନାୟକ ନୂଆ ଓଡ଼ିଶା ଗଢ଼ିବା ପାଇଁ ସଂକଳ୍ପବଦ୍ଧ, ସେହି

ବ୍ୟକ୍ତି ଓଡ଼ିଶା ଗଢ଼ିବା ପୂର୍ବରୁ ଭାରତର ସ୍ୱାଧୀନତା ପାଇଁ ହାତରେ–ଗୋଡ଼ରେ ବେଡ଼ି ପିନ୍ଧି ବ୍ରିଟିଶ୍ ବିରୁଦ୍ଧରେ ସଂଗ୍ରାମ କରିଥିଲେ। ଠିକ୍ ଯେପରି ଭାବରେ କଳିଙ୍ଗ ବୀର "ଖାରବେଳ" ମଗଧ ଉପରେ ପ୍ରତିଶୋଧ ନେବା ପୂର୍ବରୁ ଭାରତର ଶତ୍ରୁ ଗ୍ରୀକ୍‌ମାନଙ୍କୁ ପ୍ରଥମେ ବିଦାୟ କରିବା ପାଇଁ ଯାଇଥିଲେ । ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ, ଓଡ଼ିଶାର ସଂସ୍କୃତି, ସାହିତ୍ୟ, ବୀରତ୍ୱ ସାଙ୍ଗକୁ ଭାରତର ଐକ୍ୟ ଆଣିବା ପାଇଁ ଭାରତକୁ ଏକ ଶାସନ ତଳେ ରଖିବା ପାଇଁ କଳିଙ୍ଗ ରାଜ ଖାରବେଳଙ୍କ ଜାତୀୟତା ସମଗ୍ର ଭାରତବର୍ଷକୁ ଝଙ୍କାରିତ କରି ପାରିଥିଲା ।

ଆଜି ଆମର ସେହି ଆଗଙ୍ଗା ଗୋଦାବରୀ ବିଶାଳ ସାମ୍ରାଜ୍ୟ ନଥିଲେ ମଧ୍ୟ ଆମର ଜାତୀୟତା, ଆମର କଳା, କାରୁକାର୍ଯ୍ୟ, ଆମର ବୀରତ୍ୱ, ଆମର ପାଇକ ସଂସ୍କୃତି ଏ ମାଟିର ଗର୍ବ ଓ ଗୌରବ ହୋଇ ରହିଛି । ଆମର ପାଇକ ସଂସ୍କୃତିରେ ସେ ହରିଜନ ହେଉ, ଗିରିଜନ ହେଉ, ମୁସଲମାନ ହେଉ ବା ଜୟୀ ରାଜଗୁରୁ ଭଳି ବ୍ରାହ୍ମଣ ହେଉ କିମ୍ବା କରଣ ହେଉ, ଯିଏ ଦେଶ ପାଇଁ ପ୍ରାଣପାତ କରିବାକୁ ପ୍ରସ୍ତୁତ ହୁଏ ସେ ପାଇକ ଜାତି, ଧର୍ମ ନିର୍ବିଶେଷରେ ତା'ର ବୀରା ରମଣୀ, ତା'ର ମା', ଭଉଣୀ ଏବଂ ଝିଅ ମୁଣ୍ଡରେ ସିନ୍ଦୁରର ବିଜୟ ଟୀକା ପିନ୍ଧାଇ ଯୁଦ୍ଧକୁ ହସି ହସି ପଠାଇଥାଏ । ସେହି ବୀର ଭୂମି ଓଡ଼ିଶାକୁ ବ୍ରିଟିଶ୍ ସରକାର ଛିନ୍ନଭିନ୍ନ କରି ଭୀରୁ ରାଜ୍ୟରେ ପରିଣତ କରିଦେବା ପାଇଁ ଚେଷ୍ଟା କରିଥିଲା । ଉତ୍କଳ ଗୌରବ ମଧୁସୂଦନ, ଉତ୍କଳମଣି ଗୋପବନ୍ଧୁ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ପ୍ରମୁଖ ନେତାମାନେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ ସଂଗ୍ରାମ କଲାବେଳେ ମଧୁବାବୁ କହିଥିଲେ – "କୋଟିଏ ସନ୍ତାନ ମା'ଗୋ ଧରିଅଛୁ କୋଳେ, ଗୋଟିଏ ମଣିଷ ନଦେଖିଲି ତୋଳେ" । ଆଜି ସେ ଉପଯୁକ୍ତ ସମୟ ଆ... ପହଞ୍ଚିଛି । ମଧୁବାବୁଙ୍କ ଆଶା ଫଳବତୀ ହୋଇଛି । ଓଡ଼ିଶା... ପ୍ରଗତିର ରଥ ଚକକୁ ଆଗେଇ ନେବା ପାଇଁ ବିଜୁବାବୁ ଏବେ ଦାୟିତ୍ୱ... ବହନ କରିଛନ୍ତି । ସେହି ପ୍ରଗତିର ରଥକୁ ଟାଣିନେବା ପାଇଁ ଜାତି, ଧର୍ମ ନିର୍ବିଶେଷରେ ବୀର ପାଇକମାନଙ୍କର ଆବଶ୍ୟକତା ରହି... ବୀରା ରମଣୀ ଶୁକଦେଇ, ରାଣୀ ପାଟମହାଦେଈଙ୍କ ଆବଶ୍ୟକତା... ରହିଛି । ବକ୍ସି ଜଗବନ୍ଧୁ (ଚନ୍ଦନ ହଜୁରୀ), ବୀର ସୁରେନ୍ଦ୍ର ସାଏ, ବକ୍ସି ଜଗବନ୍ଧୁ, ଜୟୀ ରାଜଗୁରୁ, ଚକରା ବିଶୋୟୀ ଭଳି ଅସଂଖ୍ୟ ପା... – ପାଇକମାନଙ୍କର ଆବଶ୍ୟକତା ରହିଛି ।

ଓଡ଼ିଶା ଆଜି ପଛରେ ପଡ଼ିଯାଇଛି ସତ୍ୟ, କିନ୍ତୁ ଓଡ଼ିଶା ଜାତି କଦାପି ପଛୁଆ ନୁହେଁ । ଓଡ଼ିଆ ଜାତି ଜାଗ୍ରତ ହେଲେ କୋଣାର୍କ ଭଳି ମନ୍ଦିର ତିଆରି କରି ବିଶ୍ୱରେ ବିସ୍ମୟ ସୃଷ୍ଟି କରିପାରିବ । କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ଭଳି କବିତାରେ କୋଣାର୍କ ଭିଆରି କରି ବିଶ୍ୱରେ ପ୍ରସିଦ୍ଧି ଲାଭ କରିପାରିବ ଏବଂ ପାଇକ ପୁଅ ତରବାରୀ ଝଲକା... କଲେ ସେ ତରବାରୀ ଖାରବେଳର ତରବାରୀ ହୋଇପାରିବ । କିନ୍ତୁ ଅତୀବ ଦୁଃଖ ଏବଂ ଆଶ୍ଚର୍ଯ୍ୟର ବିଷୟ ଭାରତୀୟ ସେନାବାହିନୀରେ ଏ ପର୍ଯ୍ୟନ୍ତ "ଓଡ଼ିଆ ରେଜିମେଣ୍ଟ" ନାହିଁ । ଓଡ଼ିଆ ପାଇକ ପୁଅ ରଣ ହୁଙ୍କାର ଦେଇ ଉଠିଲେ ଭାରତୀୟ ସେନାବାହିନୀରେ "କଳିଙ୍ଗ ରେଜିମେଣ୍ଟ" ସୃଷ୍ଟି ହୋଇପାରିବ ଏବଂ ପାଇକ ପୁଅ ତା'ର ବୀରତ୍ୱର ପରିଚୟ ଦେଇପାରିବ, ସେଥିରେ ସନ୍ଦେହ ନାହିଁ । ଏଥିପାଇଁ ଦୃଢ଼ ମନୋବଳ ଆବଶ୍ୟକ । ଆସନ୍ତୁ ଶପଥ ନେବା ଯେ ଓଡ଼ିଆ ଜାତିର ପୂର୍ବ ଗୌରବ ଫେରାଇ ଆଣି ତା'ର ନୂତନ ଇତିହାସ ଗଠନ କରିବା । ଏଥିପାଇଁ ସାହସ, ସଂକଳ୍ପ ଓ ନିଷ୍ଠା ଦରକାର ।



ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ୧-୪-୧୯୯୨ ତାରିଖରେ ଉତ୍କଳ ଦିବସ ପାଳନ ଅବସରରେ 'ଉତ୍କଳ ପ୍ରସଙ୍ଗ'ର ସ୍ୱତନ୍ତ୍ର ସଂଖ୍ୟା ଉନ୍ମୋଚନ କରୁଛନ୍ତି । ବାମକଡ଼ି ଶ୍ରୀ ଯୁଧିଷ୍ଠିର ଦାସ, ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କର ଓ ଉତ୍କଳ ପ୍ରସଙ୍ଗର ମୁଖ୍ୟ ସମ୍ପାଦକ ଶ୍ରୀ ସତୀଶ ପାଢ଼ୀ ଉପସ୍ଥିତ ଅଛନ୍ତି ।

# ଜନସେବାରେ ରେଡ୍‌କ୍ରସ୍

ମୁସ୍ତାଫିଜ୍ ଅହମ୍ମଦ୍

ବିପଦ ଆପଦ ସମୟରେ ମଣିଷ ନିଜର କୁଟୁମ୍ବ ବା ବନ୍ଧୁକୁ ଖୋଜେ କିନ୍ତୁ ସେମାନେ ଯଦି ପାଖରେ ନଥାନ୍ତି ବା ନିଜେ ବିପନ୍ନ ଗ୍ରସ୍ତ ହୋଇଥାନ୍ତି ତାହାହେଲେ କ'ଣ ତାଙ୍କୁ କେହି ସାହାଯ୍ୟ ହେବେନାହିଁ । ନା, ସେତେବେଳେ ତାଙ୍କ ପାଇଁ ଆନ୍ତର୍ଜାତୀୟ ସଂସ୍ଥା ରେଡ଼କ୍ରସ୍ ରୂପରେ ଦେଖା ଦେଇଥାଏ ଏବଂ ସାହାଯ୍ୟ କରେ । ଈଶ୍ୱର ଯେପରି ଜାତି, ଦେଶ, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ସମସ୍ତ ମନୁଷ୍ୟଙ୍କୁ ନିଜର ସନ୍ତାନ ଭଳି ବ୍ୟବହାର କରନ୍ତି, ରେଡ଼କ୍ରସ୍ ସଂସ୍ଥା ସେହିଭଳି ସମସ୍ତ ମାନବ ସମାଜକୁ ସହାନୁଭୂତି ଓ ସହୃଦୟତାର ସହ ବିପଦ ଆପଦରେ ସାହାଯ୍ୟ କରେ । ଏହି ରେଡ଼କ୍ରସ୍ ସଂସ୍ଥାର କାର୍ଯ୍ୟ ପରିସର ଆଲୋଚନା ପୂର୍ବରୁ ଏହାର ଜନ୍ମଦାତା ସେହି ମହାପୁରୁଷ ହେନେରୀ ଡୁନାନ୍ଙ୍କ ସମ୍ବନ୍ଧରେ କିଛି ଜାଣିବା ଆବଶ୍ୟକ ।

ହେନେରୀ ଡୁନାନ୍ତ ୧୮୨୮ ମସିହାରେ ସ୍ୱିଜରଲାଣ୍ଡର ଜେନେଭା ସହରରେ ଏକ ବଣିକ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ହେନେରୀ ଯେତେବେଳେ ୩ ବର୍ଷର ପିଲା ଥିଲେ ସେତେବେଳେ ତାଙ୍କ ପିତା ପିତୃମାତୃ ହୀନ ପିଲାଙ୍କ ପାଇଁ ଏକ ବାଳାଶ୍ରମ ଖୋଲିଥିଲେ । ତାଙ୍କ ମାତା ସେଇ ବାଳାଶ୍ରମରେ ପିଲାଙ୍କର ଭରଣ ପୋଷଣର ବ୍ୟବସ୍ଥା କରିବା ସଙ୍ଗେ ସଙ୍ଗେ ଗରୀବ, ରୋଗୀ, ବୃଦ୍ଧ ଓ ନିଃସହାୟ ଲୋକଙ୍କୁ ସାହାଯ୍ୟ କରୁଥିଲେ । ପିତାମାତାଙ୍କର ଏହି ତ୍ୟାଗ ମନୋଭାବ ବାଳକ ହେନେରୀଙ୍କ ମନରେ ଗଭୀର ରେଖାପାତ କରିଥିଲା । ଛାତ୍ରାବସ୍ଥାରେ ସେ Florence Nightingale'ଙ୍କର ସେବାରେ ବିଶେଷ ଭାବରେ ପ୍ରଭାବିତ ହୋଇଥିଲେ ।

ହେନେରୀ ତାଙ୍କର କର୍ମମୟ ଜୀବନର ଅଳ୍ପଦିନ ମଧ୍ୟରେ ୧୮୫୯ ମସିହାରେ ଫ୍ରାନ୍ସ ଓ ଅଷ୍ଟ୍ରିଆ ମଧ୍ୟରେ ଚାଲିଥିବା ଯୁଦ୍ଧ (Battle of Solferino)ର ଭୟାବହ ଦୃଶ୍ୟ ଦେଖିବାକୁ ଯାଇଥିଲେ । ସେଠାରେ ସେ ଦେଖିଲେ ଯେ ଆହତ ଲୋକଙ୍କ ସେବା କରିବା ପାଇଁ ଯଥେଷ୍ଟ ସଂଖ୍ୟକ ଡାକ୍ତର ବା ସେବାକାରୀ ନାହାନ୍ତି । ସେ ସେଠାରେ ନିଜ ଉଦ୍ୟମରେ ଏକ ସ୍ୱେଚ୍ଛାସେବୀ ସଙ୍ଗଠନ ଗଢ଼ି ଆହତଙ୍କର ସେବାରେ ଲାଗିପଡ଼ିଲେ । କ୍ରମେ ତାଙ୍କର ସେବା ଭାବରେ ଉଦ୍‌ବୁଦ୍ଧ ହୋଇ ସ୍ତ୍ରୀ ଲୋକମାନେ ମଧ୍ୟ ଲାଗିପଡ଼ିଲେ । ସେ ଯେତେବେଳେ ଅଷ୍ଟ୍ରିଆର ଆହତ ସୈନ୍ୟଙ୍କର ସେବା କଲେ ସେତେବେଳେ ଜଣେ ଫରାସୀ ସ୍ତ୍ରୀ ଲୋକ ତାଙ୍କୁ ପ୍ରଶ୍ନକଲେ "ଏ କଣ କରୁଛ ? ସେମାନେ ଯେ ଶତ୍ରୁ" ହେନେରୀ ଉତ୍ତର ଦେଲେ "ଶତ୍ରୁ ହେଲେ ମଧ୍ୟ ସେମାନେ ମଣିଷ" ଏହି ବାକ୍ୟଟିରେ ହିଁ ତାଙ୍କ ଜୀବନ ଦର୍ଶନ ସ୍ପଷ୍ଟ ଭାବେ ପ୍ରତିଫଳିତ । ମାନବ ଜୀବନର ମୂଲ୍ୟବୋଧ ଯେ ଦେଶ, ଜାତି, ଧର୍ମ ଓ ବର୍ଣ୍ଣ ସଙ୍କୀର୍ଣ୍ଣତାର ବହୁ ଊର୍ଦ୍ଧ୍ୱରେ ତାହା ସେ ଅନୁଭବ କରିଥିଲେ ଏବଂ ତାଙ୍କର ସେହି ଭାବନାରୁ ଜନ୍ମ ନେଇଥିଲେ ତାଙ୍କର ମାନସ ପୁତ୍ର Red Cross । ତାଙ୍କର ସଙ୍ଗଠନଟି ଅଚିରେ ବହୁଜନ ସ୍ୱୀକୃତି ଲାଭକଲା । ହେନେରୀଙ୍କ ଅନୁରୋଧ କ୍ରମେ ଅନେକ ଦେଶ ୧୮୬୩ ମସିହାରେ ଜେନେଭାଠାରେ ସମ୍ମିଳିତ Red Cross ସଂସ୍ଥାକୁ ସ୍ୱୀକୃତି ଦେବା ସଙ୍ଗେ ସଙ୍ଗେ ପ୍ରଥମ ଜେନେଭା କନ୍‌ଭେନ୍‌ସନ୍ ପ୍ରସ୍ତୁତି କରିଥିଲେ ।

ରେଡ଼କ୍ରସ ସଂସ୍ଥା ଯଦିଓ ପ୍ରଥମେ ଆହତ ବ୍ୟକ୍ତିଙ୍କ ସେବା ପାଇଁ ସୃଷ୍ଟି ହୋଇଥିଲା, ତଥାପି ଏହା ନିଜର ମୌଳିକ ଲକ୍ଷ୍ୟ 'ମଣିଷର ଦୁଃଖ ଦୂର କରିବା (Alleviation of human sufferings) ପୂରଣ କରିବା ପଥରେ ଅନେକ କାର୍ଯ୍ୟକ୍ରମ ନିଜ ହାତକୁ ନେଇପାରିଛି । ଯଥା, ବନ୍ୟା, ବାତ୍ୟା, ମରୁଡ଼ି, ଗୃହଦାହ ଆଦି ପ୍ରାକୃତିକ ବିପର୍ଯ୍ୟୟରେ ସାହାଯ୍ୟ କରିବା, ଯୁଦ୍ଧକ୍ଷେତ୍ର, ଦଙ୍ଗାଗ୍ରସ୍ତ ଦୁର୍ଘଟଣାଗ୍ରସ୍ତ ଆହତଙ୍କର ସେବା କରିବା, ଜରା ଓ ରୋଗଗ୍ରସ୍ତ ନିଃସହାୟଙ୍କର ସେବା କରିବା ଏବଂ ପଙ୍ଗୁ, ଅନ୍ଧ, ମୂକ, ବଧିର ଆଦି ମାନଙ୍କର ସେବା ଥଇଥାନ ଆଦି କରିବା ।

ରେଡ଼କ୍ରସ୍ ସଂସ୍ଥା ଏକ ଆନ୍ତର୍ଜାତୀୟ ସଂସ୍ଥା । ଏହାର ସଭ୍ୟରାଷ୍ଟ୍ରମାନଙ୍କରେ ରାଷ୍ଟ୍ରୀୟ ସଂସ୍ଥାମାନ (ଯଥା ଭାରତରେ (India Red Cross Society) ସୃଷ୍ଟି ହୋଇଛି । ଆମର ପ୍ରତ୍ୟେକ ପ୍ରଦେଶ ଓ ଜିଲ୍ଲାମାନଙ୍କରେ ଏହାର ଶାଖାମାନ ସ୍ଥାପିତ ହୋଇଛି । ଆମର ଓଡ଼ିଶା ଶାଖା ରେଡ଼କ୍ରସର ସଭାପତି ହେଉଛନ୍ତି ମାନ୍ୟବର ରାଜ୍ୟପାଳ ମହୋଦୟ ।

ଆମର ଭାରତବର୍ଷର ଅନ୍ୟାନ୍ୟ ରାଜ୍ୟ ତୁଳନାରେ ଓଡ଼ିଶାରେ ରେଡ଼କ୍ରସ ସଂସ୍ଥା ଯଥେଷ୍ଟ ସେବାମୂଳକ କାର୍ଯ୍ୟ ନିଜ ହାତକୁ ନେଇ ସୁଗ୍ଧରୂ ରୂପେ ତୁଲାଇ ପାରୁଛି ।

ଗତ ବର୍ଷମାନଙ୍କ ତୁଳନାରେ ଗତ କେତେବର୍ଷ ହେଲାଣି ରାଜ୍ୟ ରେଡ଼କ୍ରସ୍ ସଂସ୍ଥା ସର୍ବଭାରତୀୟ ସ୍ତରରେ ଅଗ୍ରଣୀ । ଏହାର ମୁଖ୍ୟ କାରଣ ବର୍ତ୍ତମାନର ମାନ୍ୟବର ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମାଙ୍କ ନିଷ୍ଠାପର ଉଦ୍ୟମ ଓ ପ୍ରେରଣା । ରେଡ଼କ୍ରସ୍‌କୁ ସାହାଯ୍ୟ କରିବା ପାଇଁ ସେ ସମସ୍ତଙ୍କ ପାଖରେ ହାତ ପତାଇଛନ୍ତି ଏବଂ ଅକୁଣ୍ଠ ଚିତ୍ତରେ ଲୋକେ ସାହାଯ୍ୟ ଦେଉଛନ୍ତି । ତାଙ୍କର ଏଭଳି ସେବା ପାଇଁ ଓଡ଼ିଶାବାସୀ ତାଙ୍କ ପାଖରେ ଚିରଋଣୀ ।

ଓଡ଼ିଶା ଏକ ରାଜ୍ୟ ଯେଉଁଠିକି ଅନ୍ୟ ରାଜ୍ୟ ତୁଳନାରେ ବନ୍ୟା, ବାତ୍ୟା, ମରୁଡ଼ି ଓ ଗ୍ରୀଷ୍ମ ଦାହ ଭଳି ପ୍ରାକୃତିକ ବିପର୍ଯ୍ୟୟ ଅଧିକ ପରିମାଣରେ ଘଟିଥାଏ ଓ ସମସ୍ତ ପ୍ରକାର ବିପଦ ସମୟରେ ଆମର ରାଜ୍ୟ ଶାଖା ରେଡ଼କ୍ରସ୍‌ର ସାହାଯ୍ୟ ଓ ସେବା ନିଃସନ୍ଦେହରେ ପ୍ରଶଂସନୀୟ । ତା'ଛଡ଼ା ଆମର ରେଡ଼କ୍ରସ୍ ଶାଖା, ଜରାନିବାସ, ପ୍ରସୂତୀ ଓ ଶିଶୁ ମଙ୍ଗଳ କେନ୍ଦ୍ର, ସ୍ୱାସ୍ଥ୍ୟ କେନ୍ଦ୍ର ଓ ଶାରୀରିକ ଓ ମାନସିକ ବିକଳାଙ୍ଗ ପାଇଁ ସେବା କେନ୍ଦ୍ରମାନ ଖୋଲି ପ୍ରଶଂସାଭାଜନ ହୋଇପାରୁଛି । ସର୍ବୋପରି ରୋଗୀମାନଙ୍କ ସେବା ପାଇଁ ସମସ୍ତ ରାଜ୍ୟର ରକ୍ତ ସଂଗ୍ରହ ଓ ରକ୍ତ ଯୋଗାଣ କାର୍ଯ୍ୟକ୍ରମ ମଧ୍ୟ ରେଡ଼କ୍ରସ୍ ଶାଖା ହାତକୁ ନେଇଛି ।

ଏହି ରକ୍ତ ସଂଗ୍ରହ ପାଇଁ ସୁସ୍ଥ ନିରୋଗ ବ୍ୟକ୍ତିମାନଙ୍କୁ ସେମାନ... ତା'ର ସେବା ମନୋଭାବରେ ପ୍ରଭାବିତ କରି ରକ୍ତ ସଂଗ୍ରହ କରିଥା... ଏବଂ ଆବଶ୍ୟକ ସ୍ଥଳେ ରୋଗୀମାନଙ୍କ ସେବାରେ ଯୋଗା... ଦେଇଥାଏ । ଏ ପ୍ରକାର କାର୍ଯ୍ୟ ଯେ ରେଡ଼କ୍ରସ୍ ଭଳି ... ନିଃସ୍ୱାର୍ଥପର ସେବା ସଂସ୍ଥା ମାଧ୍ୟମରେ ସୁରୁଖୁରୁ ରୂପେ ସମ... କରାଯାଇ ପାରିବ ଏହା ନିଶ୍ଚିତ ଭାବେ କୁହାଯାଇପାରେ ।

ଏବେ ଆମ ରାଜ୍ୟରେ କଟକ କେନ୍ଦ୍ରୀୟ ରକ୍ତ ଭଣ୍ଡାର ବ୍ୟତୀ... ପ୍ରତ୍ୟେକ ଜିଲ୍ଲା ଓ ଅନେକ ସବ୍–ଡିଭିଜନ ମିଶାଇ ୪୦ ଗୋ... ରେଡ଼କ୍ରସ୍ ରକ୍ତଭଣ୍ଡାର ଅଛି । ସୁଖର ବିଷୟ ଯେ ଗତ ୧୦ ବ... ଭିତରେ ରେଡ଼କ୍ରସ୍ ରକ୍ତ ଭଣ୍ଡାରଗୁଡ଼ିକରୁ ପେଶାଦାର ରକ୍ତଦା... ବ୍ୟବସ୍ଥାର ସମ୍ପୂର୍ଣ୍ଣ ବିଲୋପ ହୋଇ ବର୍ତ୍ତମାନ କେବଳ ସ୍ୱେଚ୍ଛାକୃ... ରକ୍ତଦାନ ଓ ପ୍ରତିବଦଳ ରକ୍ତ ଦାନରେ ରକ୍ତଭଣ୍ଡାରଗୁଡ଼ିକ ... ଚାଲୁଛି ।

ବିଶ୍ୱ ରେଡ଼କ୍ରସ୍ ଦିବସରେ (ମେ ୮ତାରିଖ) ଯାହାକି ସେ... ଯୁଗର ପୁରୁଷ ହେନେରୀ ଡୁନାଣ୍ଟଙ୍କର ଜନ୍ମତିଥି ଆମେ ସମସ୍ତ... ଶପଥ ନେବା ଉଚିତ ଯେ ଆମେ ଜାତି, ଧର୍ମ, ବର୍ଣ୍ଣ ଦେଶ ଆଦି ସଂକୀର୍ଣ୍ଣତାରୁ ଊର୍ଦ୍ଧ୍ୱରେ ରହି, ସମସ୍ତ ପ୍ରକାର ଭେଦଭାବ ରହି... ହୋଇ ଯେ କୌଣସି ଦୁଃଖୀରଙ୍କି ଏବଂ ଦୁର୍ଦ୍ଦଶାଗ୍ରସ୍ତ ମଣିଷ... ସେବାରେ ନିଜକୁ ନିୟୋଗ କରିବୁ । "ଏ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ" ।



ରାଜଭବନରେ ଏକ ଉତ୍ସବରେ ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା 'ଗୋବର୍ଦ୍ଧିକା'ର ଏକଶତ ସଂଖ୍ୟାକୁ ଉନ୍ମୋଚନ କରୁଛନ୍ତି । ଏହି ଉତ୍ସବରେ ସଂସ୍କୃତି ମନ୍ତ୍ରୀ ଶ୍ରୀ ଶରତ କୁମାର କର, ଯୋଜନା ଓ ସମନ୍ୱୟ ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼େଇ, ପେନ୍‌ସନ୍ ଓ ସାଧାରଣ ଅଭିଯୋଗ ମନ୍ତ୍ରୀ ଶ୍ରୀ ପ୍ରସନ୍ନ ପାଟ୍ଟଶାଣୀ ଉପସ୍ଥିତ ଅଛନ୍ତି ।

# ହରିଜନ ଓ ଆଦିବାସୀଙ୍କ ଉତ୍ଥାନ

ଡକ୍ଟର ଅନଙ୍ଗ ମହାପାତ୍ର

ଓଡ଼ିଶା ଏକ କୃଷି ପ୍ରଧାନ ତଥା ଆଦିବାସୀ ଓ ହରିଜନ ବହୁଳ ରାଜ୍ୟ ଭାବରେ ପରିଗଣିତ । ଜନଗଣନା ଅନୁଯାୟୀ ଆମ ରାଜ୍ୟରେ ବାସ କରୁଥିବା ହରିଜନ ଓ ଆଦିବାସୀମାନଙ୍କ ସଂଖ୍ୟା ବର୍ତ୍ତମାନ ସୁଦ୍ଧା ପ୍ରାୟ ଏକ କୋଟିରୁ ଊର୍ଦ୍ଧ୍ୱ । ଏହି କୋଟିଏ ଲୋକଙ୍କର ଉନ୍ନତି ସାଧନ ନ ହେଲେ କ'ଣ ସମଗ୍ର ରାଜ୍ୟର ଉନ୍ନତି ହେବ ? ରାଜ୍ୟର ସାମୂହିକ ତଥା ପୂର୍ଣ୍ଣାଙ୍ଗ ବିକାଶ କରିବାକୁ ହେଲେ ଆଦିବାସୀ ଓ ହରିଜନଙ୍କ ସମେତ ସମାଜର ଅବହେଳିତ ଅନୁନ୍ନତ ତଥା ଗୁରୁତ୍ୱପୂର୍ଣ୍ଣ ଅଂଶର କଲ୍ୟାଣସାଧନ ଅତ୍ୟନ୍ତ ଜରୁରୀ । ସେଥିପାଇଁ ଆମ ରାଜ୍ୟ ସରକାର ସେହିମାନଙ୍କ ଉନ୍ନତି ନିମନ୍ତେ ଦୃଢ଼ ସଙ୍କଳ୍ପବଦ୍ଧ ।

## ଶିକ୍ଷାର ପ୍ରସାର :

ଆମ ସରକାର ହରିଜନ ଓ ଆଦିବାସୀମାନଙ୍କ ମଧ୍ୟରେ ଶିକ୍ଷାର ପ୍ରସାର ଲାଗି ଅଧିକ ଗୁରୁତ୍ୱ ଆରୋପ କରିଛନ୍ତି । ସେମାନଙ୍କୁ ମାନସିକ, ଶାରୀରିକ ତଥା ଆର୍ଥିକ ସ୍ତରରେ ବିକାଶ ଲାଗି ଶିକ୍ଷା ଅପରିହାର୍ଯ୍ୟ । ସେ ଦୃଷ୍ଟିରୁ ବିଭିନ୍ନ ଛାତ୍ରାବାସ, ଛାତ୍ରୀବାସ, ଶିକ୍ଷାନୁଷ୍ଠାନ ନିର୍ମାଣ, ଛାତ୍ର ଛାତ୍ରୀଙ୍କ ଖାଦ୍ୟପେୟ, ପୋଷାକପତ୍ର, ପାଠ୍ୟୋପକରଣ, ଯୋଗାଣ, ଖେଳ କସରତ ଓ ସେମାନଙ୍କର ସ୍ୱାସ୍ଥ୍ୟରକ୍ଷା ବାବଦରେ ଆର୍ଥିକ ସାହାଯ୍ୟ ଏବଂ ସର୍ବୋପରି ବୃତ୍ତି ପ୍ରଦାନର ବ୍ୟବସ୍ଥା କରାଯାଇଛି । ଫଳରେ ବର୍ତ୍ତମାନ ସେମାନଙ୍କର ସାକ୍ଷର ସଂଖ୍ୟା ଆଶାନୁରୂପ ଭାବେ ବୃଦ୍ଧି ପାଇଛି । ପ୍ରତ୍ୟେକ ଗ୍ରାମ ପଞ୍ଚାୟତରେ ଗୋଟିଏ କରି ଛାତ୍ରାବାସ ନିର୍ମାଣ କରାଯାଇ, ବର୍ତ୍ତମାନ ସୁଦ୍ଧା ୧୦୦୦ରୁ ଊର୍ଦ୍ଧ୍ୱ ଛାତ୍ରାବାସ ନିର୍ମାଣ କରାଯାଇଛି । ଏହି ଛାତ୍ରାବାସମାନଙ୍କରେ ପ୍ରାୟ ୪୦,୦୦୦ରୁ ଊର୍ଦ୍ଧ୍ୱ ପିଲା ରହୁଛନ୍ତି । ଏହାଛଡ଼ା ବାଳକ ବାଳିକାଙ୍କ ପାଇଁ ସ୍ୱତନ୍ତ୍ର ଭାବେ ବିଦ୍ୟାଳୟ ସ୍ଥାପିତ ହୋଇଛି । ଏହା ବ୍ୟତୀତ ୮୦ରୁ ଊର୍ଦ୍ଧ୍ୱ ଆଶ୍ରମ ସ୍କୁଲ ଓ କନ୍ୟାଶ୍ରମ ପ୍ରତିଷ୍ଠା ହୋଇଛି ଏବଂ ସେ ସବୁରେ ପ୍ରାୟ ୩୦,୦୦୦ରୁ ଊର୍ଦ୍ଧ୍ୱ ଛାତ୍ର ଛାତ୍ରୀ ଶିକ୍ଷାଲାଭ କରୁଛନ୍ତି । ଏହି ଆଦିବାସୀ ହରିଜନ ଛାତ୍ରଛାତ୍ରୀଙ୍କୁ ସରକାର କନିଷ୍ଠ ବର୍ଗ ଓ ବରିଷ୍ଠ ବର୍ଗ ଦୁଇ ପ୍ରକାର ବୃତ୍ତିର ବ୍ୟବସ୍ଥା କରିଛନ୍ତି । ଅଣୁ ପରିଯୋଜନା (ମାଇକ୍ରୋ ପ୍ରୋଜେକ୍ଟ) ଅଞ୍ଚଳରେ ଆଦିମ ଆଦିବାସୀମାନଙ୍କ ମଧ୍ୟରେ ଶିକ୍ଷାର ପ୍ରସାର ପାଇଁ ସରକାର ବିଶେଷ ତତ୍ପର । ସେଥି ପାଇଁ ରାଜ୍ୟ ସରକାର କେନ୍ଦ୍ରରୁ ସାହାଯ୍ୟ ପାଇପାରୁଛନ୍ତି । ହରିଜନ ଓ ଆଦିବାସୀ ବିଭାଗ ୬ଟି ହାଇସ୍କୁଲ ସମେତ ରାଜ୍ୟର ମୋଟ ୩୧ଟି ହାଇସ୍କୁଲରେ ଯୁକ୍ତ ଦୁଇ ସ୍ତରରୁ ବିଭିନ୍ନ ବୃତ୍ତିଗତ ଶିକ୍ଷାଦାନ ପାଇଁ ବ୍ୟବସ୍ଥା ହୋଇଛି । ଏଥି ପାଇଁ ବଛା ଯାଇଥିବା ୬ଟି ବିଭାଗୀୟ ସ୍କୁଲ ହେଲା–ପୁରୀ ଜିଲ୍ଲାର ତପୋବନ ହାଇସ୍କୁଲ, ମୟୂରଭଞ୍ଜ ଜିଲ୍ଲାର ବିଶୋଇ ହାଇସ୍କୁଲ, କେନ୍ଦୁଝର ମାଟ୍‌କାମବେଡ଼ା ହାଇସ୍କୁଲ, ଫୁଲବାଣୀର ନୂଆଗାଁ ହାଇସ୍କୁଲ ଏବଂ କୋରାପୁଟର ସୁନାବେଡ଼ା ଓ କୈଳାସପୁର ହାଇସ୍କୁଲ । ବିଭିନ୍ନ ପ୍ରତିଯୋଗିତା ମୂଳକ ପରୀକ୍ଷାରେ ସାଫଲ୍ୟ ଲାଭ ନିମନ୍ତେ ଶିକ୍ଷିତ ଆଦିବାସୀ ହରିଜନ ଛାତ୍ର ଛାତ୍ରୀମାନଙ୍କୁ ପ୍ରାକ୍ ପରୀକ୍ଷା ତାଲିମ୍ ଦେବାର ବ୍ୟବସ୍ଥା ରାଜ୍ୟ ସରକାର କରିଛନ୍ତି । ଏଥିପାଇଁ ସେମାନଙ୍କୁ ତାଲିମ୍ କାଳ ମଧ୍ୟରେ ଷ୍ଟାଇପେଣ୍ଡ ଭାବରେ ୧୫୦ରୁ ୨୫୦ ଟଙ୍କାକୁ ବୃଦ୍ଧି କରାଯାଇଛି ।

## ଆଦିମ ଆଦିବାସୀଙ୍କ ପାଇଁ ଉନ୍ନୟନ ଯୋଜନା :

ଆମ ରାଜ୍ୟରେ ବାସକରୁଥିବା ଆଦିମ ଆଦିବାସୀ ରୂପେ ସ୍ୱୀକୃତ ୧୨ଟି ଆଦିବାସୀ ଗୋଷ୍ଠୀଙ୍କ ପାଇଁ ୧୫ଟି ଅଣୁ ପରିଯୋଜନା(ମାଇକ୍ରୋ ପ୍ରୋଜେକ୍ଟ) ଗଠିତ ହୋଇଛି । ଏହି ସବୁ ଅଞ୍ଚଳର ଆଦିବାସୀମାନେ ସେମାନଙ୍କ ପରିବାରର ଆୟ ବୃଦ୍ଧି କରିବା ଯୋଜନାରେ ଶତକଡ଼ା ୧୦୦ ଭାଗ ରିହାତି ପାଆନ୍ତି । ଏତଦ୍ ବ୍ୟତୀତ ଏହି ସବୁ ପ୍ରୋଜେକ୍ଟ ଅଞ୍ଚଳର କୃଷି ଫଳୋଦ୍ୟାନ, ପଶୁପାଳନ, ମୃତ୍ତିକା ସଂରକ୍ଷଣ, ପାନୀୟଜଳ ଯୋଗାଣ ଇତ୍ୟାଦି କାର୍ଯ୍ୟକ୍ରମ ସରକାରଙ୍କ ପକ୍ଷରୁ କରାଯାଉଛି । ଏଥିପାଇଁ କେନ୍ଦ୍ରୀୟ ସାହାଯ୍ୟ ମିଳୁଛି । ଆଇ.ଟି.ଡି.ଏ., ମାଡ଼ା., ପୁଞ୍ଜି ଏବଂ ଅଣୁ ପରିଯୋଜନା ଅଞ୍ଚଳଗୁଡ଼ିକ ବାହାରେ ଯେଉଁ ଆଦିବାସୀମାନେ ବାସ କରୁଛନ୍ତି ସେମାନଙ୍କ ନିମନ୍ତେ ସ୍ୱତନ୍ତ୍ର କେନ୍ଦ୍ରୀୟ ସହାୟତା ପାଣ୍ଠିରୁ ସାହାଯ୍ୟ ପାଇଁ ଡି.ଟି.ଡି.ପି. କାର୍ଯ୍ୟକ୍ରମ ଉଦ୍ଦିଷ୍ଟ । ଓଡ଼ିଶା

ହରିଜନ ଓ ଆଦିବାସୀ ଉନ୍ନୟନ ଅର୍ଥ ନିଗମ ଦ୍ୱାରା କାର୍ଯ୍ୟକାରୀ ହେଉଥିବା ଏହି କାର୍ଯ୍ୟକାରୀ ବାବଦରେ ବହୁ ଅର୍ଥ କେନ୍ଦ୍ରୀୟ ସାହାଯ୍ୟ ମିଳୁଛି । ଏହା ୧୯୬ଟି ବ୍ଲକ୍ ଓ ୭୩ଟି ପୌରାଞ୍ଚଳରେ କାର୍ଯ୍ୟକାରୀ ହେଉଛି ।

## ଦରିଦ୍ର, ଋଣୀ, ଆଦିବାସୀଙ୍କୁ ସହାୟତା :

ସରକାରଙ୍କ ଦରିଦ୍ର ଋଣୀ ଆଦିବାସୀଙ୍କୁ ସହାୟତା ଯୋଜନାରେ ଆଦିବାସୀ ଉପଯୋଜନା ଅଞ୍ଚଳରେ ଯେଉଁ ଆଦିବାସୀ ପରିବାର ବିଭିନ୍ନ ପ୍ରକାରର ଋଣ ନେଇ ପରିଶୋଧ କରିବାକୁ ଅସମର୍ଥ ସେମାନଙ୍କୁ ଋଣମୁକ୍ତ କରିବା ନିମନ୍ତେ ସରକାରଙ୍କ ଏହି ଯୋଜନା ଉଦ୍ଦିଷ୍ଟ । ଏହି ଯୋଜନା ଦ୍ୱାରା ବହୁ ଗରିବ ଆଦିବାସୀ ପରିବାର ଅକ୍ଳେଶରେ ଋଣ ମୁକ୍ତ ହୋଇପାରୁଛନ୍ତି । ଫଳରେ ଜଟିଳ ଆର୍ଥିକ ଦୁରବସ୍ଥା ସୁଧୁରି ଯିବାରୁ ସେମାନେ ମାନସିକ ଶାନ୍ତି ପାଇପାରୁଛନ୍ତି ।

## ଆଦିବାସୀ ଅଞ୍ଚଳରେ ରାସ୍ତା ଯୋଗାଯୋଗ :

ଆଦିବାସୀ ଅଧ୍ୟୁଷିତ ଅଞ୍ଚଳଗୁଡ଼ିକରେ ପୂର୍ବରୁ ରାସ୍ତାଘାଟର ସୁବିଧା ନଥିଲା । ଏ ସରକାର ସେମାନଙ୍କର ରାସ୍ତା ଯୋଗାଯୋଗର ସୁବିଧା କରିବାକୁ ତତ୍ପରତା ପ୍ରକାଶ କରିଛନ୍ତି । ଫଳରେ କେନ୍ଦ୍ରରୁ ସାହାଯ୍ୟ ଆଣି ଏହି ଅଞ୍ଚଳମାନଙ୍କରେ ଯାତାୟତ ନିମନ୍ତେ ପ୍ରଶସ୍ତ ରାସ୍ତା ନିର୍ମାଣ କରିଛନ୍ତି । ରାସ୍ତାଗୁଡ଼ିକ ବେଶ୍ ପ୍ରଶସ୍ତ ଓ ମଜଭୁତ୍ କରି ଗଢ଼ିତୋଳିବା ପାଇଁ ସରକାର ଦୃଷ୍ଟି ଆରୋପ କରିଛନ୍ତି । ଫଳରେ ଆଜି ଆଦିବାସୀ ଅଧ୍ୟୁଷିତ ଅଞ୍ଚଳକୁ କେହି ଲୋକ ଯିବା ପାଇଁ କୌଣସି ପ୍ରତିବନ୍ଧକ ନାହିଁ ।

## କାଶୀପୁର ଆଦିବାସୀ ଉନ୍ନୟନ ପ୍ରକଳ୍ପ :

ଓଡ଼ିଶାର କୋରାପୁଟ ଜିଲ୍ଲାରେ ଥିବା ଅନୁନ୍ନତ ଅବହେଳିତ କାଶୀପୁର ବ୍ଲକ୍ ଅଞ୍ଚଳ ଆଦିବାସୀମାନଙ୍କର ସର୍ବାଙ୍ଗୀନ ଉନ୍ନତି କଳ୍ପେ ଆଇ.ଏ.ଡ଼ି. କୃଷି ବିକାଶ ପାଇଁ ଆନ୍ତର୍ଜାତିକ ପାଣ୍ଠି ସହାୟତାରେ କାଶୀପୁର ବ୍ଲକ ଅଞ୍ଚଳରେ ଏହି ଯୋଜନା କାର୍ଯ୍ୟକାରୀ ହେଉଛି । ପ୍ରଥମ ପର୍ଯ୍ୟାୟରେ ଏହି ପ୍ରକଳ୍ପ ଅନୁଯାୟୀ ପ୍ରଥମ ପର୍ଯ୍ୟାୟରେ ୨୫ କୋଟି ଟଙ୍କା ବ୍ୟୟ ହେବାର ବ୍ୟବସ୍ଥା ହୋଇଛି । ଦ୍ୱିତୀୟ ପର୍ଯ୍ୟାୟରେ ଏହି କାର୍ଯ୍ୟ ସମ୍ପୂର୍ଣ୍ଣ କରାଯାଇ ଏହି ପ୍ରକଳ୍ପର ରକ୍ଷଣାବେକ୍ଷଣ କରାଯିବ ଏବଂ ଏ ବାବଦରେ ଛଅ କୋଟି ଟଙ୍କା ବିନିଯୋଗ ହେବାର ନିଷ୍ପତ୍ତି ନିଆଯାଇଛି । ସମୁଦାୟ ୩୧ କୋଟି ବ୍ୟୟ ଅଟକଳରେ ପ୍ରସ୍ତୁତ ଏହି କାଶୀପୁର ଆଦିବାସୀ ଉନ୍ନୟନ ପ୍ରକଳ୍ପ ପାଇଁ ଆଇ.ଏଫ୍.ଏ.ଡ଼ି. ୨୧ କୋଟି ଟଙ୍କା, ରାଜ୍ୟ ସରକାର ୧୩ କୋଟି ଟଙ୍କା ଏବଂ କେନ୍ଦ୍ର ସରକାର ୭ କୋଟି ଟଙ୍କା ଯୋଗାଇ ଦେବାର ନିଷ୍ପତ୍ତି ନିଆଯାଇଛି । ଏହି ପ୍ରକଳ୍ପରେ କୃଷି ଉତ୍ପାଦନ ପ୍ରାକୃତିକ ଓ ମାନବ ସମ୍ବଳର ବିକାଶ, ଗ୍ରାମ୍ୟ ଭିତ୍ତିଭୂମି ନିର୍ମାଣ, ବ୍ୟବସାୟ ବାଣିଜ୍ୟର ଉନ୍ନତି ଏବଂ ଭୂମି ସର୍ଭେ କାର୍ଯ୍ୟ ଇତ୍ୟାଦି କାର୍ଯ୍ୟକାରୀ ହେବ । ଏହା ଦ୍ୱାରା ବ୍ଲକ୍‌ର ୪୫୬ଟି ଗ୍ରାମରେ ବାସକରୁଥିବା ୧୨,୦୦୦ ଆଦିବାସୀଙ୍କ ସମେତ ସମୁଦାୟ ୫୦,[illegible] ଲୋକ୍ ଉପକୃତ ହେବେ ।

## ପୋଡୁଚାଷରୁ ନିବୃତ୍ତି ଓ ଥଇଥାନ ଯୋଜନା :

୧୧୮ଟି ଆଦିବାସୀ ଗ୍ରାମରେ ପରିବାରମାନେ ପୋଡୁଚାଷ କରନ୍ତି । ଏହି ପୋଡୁଚାଷରୁ ସେମାନଙ୍କୁ ନିବୃତ୍ତ କରି ଅନ୍ୟ ଲାଭଜନକ ବୃତ୍ତିରେ ଥଇଥାନ କରିବା ଲାଗି ସରକାର ପଦକ୍ଷେପ ଗ୍ରହଣ କରିଛନ୍ତି । ତାହାଦ୍ୱାରା ଆସନ୍ତା ବର୍ଷ ସୁଦ୍ଧା ୨୦୦୦ରୁ ଅଧିକ ପୋଡୁଚାଷୀ ପରିବାରକୁ ଥଇଥାନ କରିବାର ଲକ୍ଷ୍ୟ ଧାର୍ଯ୍ୟ ହୋଇଛି । କେନ୍ଦ୍ର କୃଷି ମନ୍ତ୍ରଣାଳୟ ଏଥି ପାଇଁ ଅର୍ଥ ମଞ୍ଜୁର କରିଛନ୍ତି । ଦାରିଦ୍ର୍ୟ ଦୂରୀକରଣ ପାଇଁ ଆଞ୍ଚଳିକ ଉନ୍ନୟନ ଆଭିମୁଖ୍ୟ (ଆଡାପ୍ଟ) ଏହି ଆଡାପ୍ଟ ଯୋଜନାରେ କୋରାପୁଟ ଜିଲ୍ଲାର ୭ଟି ବ୍ଲକ୍ କଳାହାଣ୍ଡି ଜିଲ୍ଲାର ୮ଟି ବ୍ଲକ୍ ଅନ୍ତର୍ଭୁକ୍ତ । ଏହି ସବୁ ବ୍ଲକ୍‌ମାନଙ୍କରେ ସରକାରଙ୍କ ତରଫରୁ ଏହି ଯୋଜନା ଅନୁଯାୟୀ କୃଷି ଉତ୍ପାଦନ, ଜଳସେଚନ, ସାମାଜିକ ଭିତ୍ତିଭୂମି ବିକାଶ ଓ ପ୍ରାକୃତିକ ପରିବେଶର ସୁରକ୍ଷା କାର୍ଯ୍ୟକାରୀ କରାଯିବ । ଏଠାରେ ଉଠାଜଳସେଚନ ପଏଣ୍ଟ ସ୍ଥାପନ ପାଇଁ ବ୍ୟବସ୍ଥା ହୋଇଛି । ଏ ବାବଦରେ କେନ୍ଦ୍ର କଲ୍ୟାଣ ମନ୍ତ୍ରଣାଳୟ ତାଙ୍କ ସ୍ୱତନ୍ତ୍ର ସହାୟତା ପାଣ୍ଠିରୁ କେନ୍ଦ୍ରୀୟ ସାହାଯ୍ୟ ଦେଇଛନ୍ତି ।

## ହରିଜନ କଲ୍ୟାଣ କାର୍ଯ୍ୟକ୍ରମ :

ହରିଜନମାନଙ୍କ ସର୍ବାଙ୍ଗୀନ ଉନ୍ନତି କଳ୍ପେ ରାଜ୍ୟସରକାର ପ୍ରତି ସଙ୍କଳ୍ପବଦ୍ଧ । କେତେକ ମୁଖ୍ୟ ଜୀବିକା ଯଥା କୃଷି, ମତ୍ସ୍ୟଚାଷ, ରେଶମ ଶିଳ୍ପ, ଚମଡ଼ା ଶିଳ୍ପ ହସ୍ତତନ୍ତ ଉତ୍ପାଦନ ପାଇଁ କାରିଗରୀ କୌଶଳର ଉନ୍ନତି ଲାଗି ତାଲିମ୍ ଉନ୍ନତ ଯନ୍ତ୍ରପାତିର ବ୍ୟବହାର, କଞ୍ଚାମାଲ ଯୋଗାଣ ବିଭିନ୍ନ କୌଳିକ ବୃତ୍ତି ଭିତ୍ତିକ କାର୍ଯ୍ୟକ୍ରମକୁ କାର୍ଯ୍ୟକାରୀ କରାଯାଇଛି । ବୁଣାକାରମାନଙ୍କ ପାଇଁ ସମବାୟ ସମିତି ଗଠନ କରି ଉନ୍ନତ ଯନ୍ତ୍ରପାତି ଯୋଗାଣ ଓ ତନ୍ତଗୃହ ନିର୍ମାଣ କରାଯାଉଛି । ଚମଡ଼ା ଶିଳ୍ପମାନଙ୍କୁ ସମ୍ପୂର୍ଣ୍ଣ ସହାୟତା ପ୍ରଦାନ, ମତ୍ସ୍ୟଜୀବୀଙ୍କୁ ଡଙ୍ଗା ଓ ଜାଲ ଯୋଗାଇ ଦିଆଯାଉ ସେମାନଙ୍କ ସମବାୟ ସମିତିକୁ ସୁଦୃଢ଼ କରାଯାଉଛି । ହରିଜନ କୃଷକମାନଙ୍କୁ ନଳକୂପ, ସେଚକୂପ, ଲିଫ୍ଟ ପଏଣ୍ଟ ଖନନ ପାଇଁ ଆର୍ଥିକ ସାହାଯ୍ୟ ଯୋଗାଇ ଦିଆଯାଇଛି । ଆଇ. ଆର୍. ଡି. ପି. ଓ ଇ. ଆର୍. ପି. ଯୋଜନାରେ ହରିଜନ ପରିବାରଙ୍କୁ ସାମିଲ କରି ସେମାନଙ୍କ ପାଇଁ ରିହାତି ହାରରେ ଋଣ ଯୋଗାଇ ଦିଆଯାଉଛି । ବିଭିନ୍ନ ବାସଗୃହ ନିର୍ମାଣ, ପାନୀୟ ଜଳ ଯୋଗାଣ, ସଂଯୋଗକାରୀ ରାସ୍ତା ନିର୍ମାଣ, ବିଦ୍ୟୁତ୍ ଯୋଗାଣ, ଗୃହ ପାଇଁ ଜମି ଏବଂ ପ୍ରୌଢ଼ଶିକ୍ଷା କେନ୍ଦ୍ର ସବୁ ସ୍ଥାପନ କରାଯାଉଛି । ସହରାଞ୍ଚଳରେ ଖୋଲା ପାଇଖାନା ସଫେଇ କାର୍ଯ୍ୟ ବନ୍ଦ କରି ସମ୍ପୃକ୍ତ ହରିଜନମାନଙ୍କୁ ଲାଭ ଜନକ ଧନ୍ଦା ଯୋଗାଣ ଓ ସେମାନଙ୍କ ପାଇଁ ମଧ୍ୟ ଗୃହ ନିର୍ମାଣ ବାବଦରେ ପୌର ସଂସ୍ଥାଗୁଡ଼ିକ ଅର୍ଥ ମଞ୍ଜୁର କରାଯାଇଛି । ଫଳରେ ଲକ୍ଷ ଲକ୍ଷ ହରିଜନ ପରିବାର ଏହି ଉପାଂଶ ଯୋଜନା ଦ୍ୱାରା ଉପକୃତ ହୋଇଛନ୍ତି ।

### ନିଯୁକ୍ତିରେ ସ୍ୱତନ୍ତ୍ରତା :

ହରିଜନ ଆଦିବାସୀମାନଙ୍କର ସରକାରୀ ଚାକିରି କ୍ଷେତ୍ରରେ ନିଯୁକ୍ତି ନିମନ୍ତେ ଏକ ନୂତନ ସଂଶୋଧନ ବିଲ୍ ବିଧାନ ସଭାରେ ଗୃହୀତ ହୋଇଯାଇଛି । ଫଳରେ ଆଦୀବାସୀ ଓ ହରିଜନମାନଙ୍କ ପାଇଁ ସରକାରୀ ଦପ୍ତରରେ ପଦବୀମାନଙ୍କରେ ସଂରକ୍ଷଣ ରକ୍ଷା ନିମନ୍ତେ ଏହି ବିଲ୍‌ରେ ନିଷ୍ପତ୍ତି ନିଆଯାଇଛି । ନୂତନ ନିଯୁକ୍ତି କ୍ଷେତ୍ରରେ ଆଦିବାସୀମାନଙ୍କ ନିମନ୍ତେ ସଂରକ୍ଷିତ ଥିବା ପଦବୀରେ କେବଳ ଆଦୀବାସୀ ପ୍ରାର୍ଥୀ ହିଁ ନିଯୁକ୍ତି ପାଇବେ । ସେହିପରି ହରିଜନମାନଙ୍କ ପାଇଁ ସଂରକ୍ଷିତ ଥିବା ପଦବୀରେ କେବଳ ହରିଜନ ପ୍ରାର୍ଥୀ ହିଁ ନିଯୁକ୍ତି ପାଇବେ । ଏଥି ପାଇଁ କୌଣସି ମତେ, ପୂର୍ବରୁ ହେଉଥିବା ଆଦିବାସୀଙ୍କ ଜାଗାରେ ହରିଜନ ବା ହରିଜନଙ୍କ ଜାଗାରେ ଆଦିବାସୀ ପ୍ରାର୍ଥୀ ରହି ପାରିବେ ନାହିଁ । ଏଥି ପାଇଁ ସରକାରଙ୍କ ପକ୍ଷରୁ ଏହି ବିଲ୍‌ରେ ନିମ୍ନମତେ ଉଲ୍ଲେଖ ରହିଛି :-

୧। "ଏହି ନିୟମ ଓଡ଼ିଶା ପଦ ପଦବୀ ଓ ଚାକିରିର ସ୍ଥାନ ସଂରକ୍ଷଣ (ତଫସିଲଭୁକ୍ତ ଜାତି ଓ ତଫସିଲଭୁକ୍ତ ସମ୍ପ୍ରଦାୟଙ୍କ ନିମନ୍ତେ) ସଂଶୋଧିତ ନିୟମ ୧୯୯୧ ନାମରେ ଅଭିହିତ । (୨) ଓଡ଼ିଶାର ପଦ ପଦବୀ ଓ ଚାକିରୀରେ ସ୍ଥାନ ସଂରକ୍ଷଣ (ତଫସିଲଭୁକ୍ତ ଜାତି ଓ ଉପଜାତିମାନଙ୍କ ନିମନ୍ତେ) ୧୯୭୫ ୬ ଧାରାରେ ନିମ୍ନ ଉପଧାରା ସଂଯୋଗ କରାଯାଇଛି ଯେ ଏହି ଉପଧାରାର କୌଣସି ତୃତୀୟ ଶ୍ରେଣୀ ଓ ଚତୁର୍ଥ ଶ୍ରେଣୀ ଚାକିରିଗୁଡ଼ିକରେ ନିଯୁକ୍ତି କ୍ଷେତ୍ରରେ ପ୍ରଯୁଜ୍ୟ ହେବ ନାହିଁ । (୩) ମୂଳ ନିୟମ ୭ମ ଧାରାର ୨ୟ ଉପଧାରାରେ ନିମ୍ନ ଉପଧାରା ସଂଯୋଗ କରାଯାଇଛି । ଏହି ଧାରାର କୌଣସି ନିୟମ ୩ୟ ଓ ୪ର୍ଥ ଶ୍ରେଣୀ ଚାକିରିଗୁଡ଼ିକ ନିମନ୍ତେ ପ୍ରଯୁଜ୍ୟ ହେବ ନାହିଁ । ଯଦି ସଂରକ୍ଷିତ ଶୂନ୍ୟ ପଦବୀଗୁଡ଼ିକୁ ପୂରଣ କରିବାକୁ ପ୍ରାର୍ଥୀ ନମିଳନ୍ତି ସେପରି କ୍ଷେତ୍ରରେ ତଫସିଲଭୁକ୍ତ ଜାତି, ପଦବୀଟି ପାଇଁ ସମ୍ପୃକ୍ତ ପ୍ରାର୍ଥୀ, ତଫସିଲଭୁକ୍ତ ସମ୍ପ୍ରଦାୟଙ୍କ ପାଇଁ ସମ୍ପୃକ୍ତ ପ୍ରାର୍ଥୀ ମନୋନୀତ କରି ଚାକିରିରେ ନିଯୁକ୍ତି ଦିଆଯିବ । ଏ କ୍ଷେତ୍ରରେ ଶୂନ୍ୟସ୍ଥାନଗୁଡ଼ିକ ପାଇଁ ଧାରା ୯ର ଡ ଉପଧାରା ଲାଗୁ ହେବ ନାହିଁ ।

ରାଜ୍ୟ ସରକାର ଆଦିବାସୀ ଓ ହରିଜନମାନଙ୍କର ସର୍ବାଙ୍ଗୀନ ଉନ୍ନତି ସାଧନ ଦିଗରେ ବଳିଷ୍ଠ ପଦକ୍ଷେପମାନ ଗ୍ରହଣକରି, ସମାଜର ଅବହେଳିତ ଅନଗ୍ରସର ଜାତିକୁ ସୁପ୍ରତିଷ୍ଠିତ କରିବା ଦିଗରେ ସମର୍ଥ ହୋଇ ପାରିଛନ୍ତି ।

---

ବାଣିଜ୍ୟ ବିଭାଗ,
ରେଭେନ୍ସା କଲେଜ, କଟକ ।




ଭୁବନେଶ୍ୱରଠାରେ ଆୟୋଜିତ 'ଆଜି କାଲି'ର ସପ୍ତମ ବାର୍ଷିକୀ ଉତ୍ସବରେ ପଞ୍ଚାୟତ୍‌ରାଜ ମନ୍ତ୍ରୀ ଶ୍ରୀ ଦାମୋଦର ରାଉତ ଉଦ୍‌ବୋଧନ ଦେଉଛନ୍ତି । ଏହି ଉତ୍ସବରେ ଯୋଗାଣ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ମଞ୍ଚାସୀନ ।

# ମିସ୍ ମେଡ଼୍‌ଲିନ୍‌ରୁ ମୀରାବେହନ୍

## (ଜଣେ ସାଧିକାଙ୍କ ଜୀବନ କାହାଣୀ)

ପ୍ରହଲ୍ଲାଦ କୁମାର ସିଂହ

"ଭାରତଛାଡ଼ ଆନ୍ଦୋଳନ ଆରମ୍ଭ କରିବାକୁ ମହାତ୍ମା ଗାନ୍ଧୀ ସ୍ଥିରକରିଛନ୍ତି, କାରଣ ସେ ବ୍ରିଟିଶ୍‌ମାନଙ୍କର ଜଣେ ବନ୍ଧୁ। ଅସହାୟ ଭାରତକୁ ଜାପାନୀମାନଙ୍କୁ ଡାକି ଆଣିବାରୁ ରକ୍ଷା କରିବାର ଏହା ହେଉଛି ଏକମାତ୍ର ବାଟ। x x x ଆପଣମାନଙ୍କ ଆଗରେ ଏବେ ଦୁଇଟି ବିକଳ୍ପ ରହିଛି– ଭାରତକୁ ମୁକ୍ତିଦେବା ବା ଗାନ୍ଧିଜୀଙ୍କୁ ହତ୍ୟା କରିବା। ଯଦି ଆପଣମାନେ ଶେଷ ବିକଳ୍ପଟି ଗ୍ରହଣ କରିବେ, ତେବେ ଇଂରେଜ ଜାତି ତାହାର ଶ୍ରେଷ୍ଠତମ ବନ୍ଧୁଙ୍କୁ ହରାଇବ। x x x ଯଦି ଥରେ ଗାନ୍ଧିଜୀଙ୍କ ଉପରକୁ ଇଂରେଜ ସରକାର ଅସ୍ତ୍ର ଉତ୍ତୋଳନ କରିବେ ତେବେ ତାହାର ଭୟାବହତା ଲାଗି ଇଂରେଜ ସରକାର ଓ ତାହାର ବଡ଼ଲାଟ ଦାୟୀ ରହିବେ। x x x ଆଗାମୀ ଦିନର ଭାରତ ଛାଡ଼ ଆନ୍ଦୋଳନରେ ଭାରତର ସୁପ୍ତ ଶକ୍ତି ଜେଗେଁ ଉଠିବ। ଏହି ବିଦ୍ରୋହକୁ ଦବାଇବା ପାଇଁ ସରକାରଙ୍କ ଲାଠି କମାଣ ଯଥେଷ୍ଟ ନୁହେଁ। ଗାନ୍ଧିଜୀଙ୍କ ସତ୍ୟ, ଅହିଂସାର ଅକଳନୀୟ ଆତ୍ମବଳ ପାଖରେ ଏହା ନଗଣ୍ୟ। ପୁଣି ଅହିଂସାର ପ୍ରାଚୀରକୁ ଭେଦ କରିବା ତ ଦୂରର କଥା, ହିଂସାର ଗୁଳିଗୋଳା ଏହା ଦେହରେ ଦାଗଟିଏ ମଧ୍ୟ କରିପାରିବ ନାହିଁ। ତୁରନ୍ତ ଭାରତୀୟମାନଙ୍କୁ ସେମାନଙ୍କର ଇପ୍ସିତ ସ୍ୱାଧୀନତା ଫେରାଇ ଦେବା ଦିଗରେ ବଡ଼ଲାଟ ଯତ୍ନବାନ ହୁଅନ୍ତୁ। ନଚେତ୍ ବଡ଼ବୁଦ୍ଧି ହାରରେ ତାଙ୍କୁ ଏଥିର ମୂଲ୍ୟଦେବାକୁ ପଡ଼ିବ ଯାହା ଅତୀତରେ କୌଣସି ବଡ଼ଲାଟଙ୍କ ଅମଳରେ ଦିଆଯାଇ ନଥିବ।

ଏ ଚୋକ୍‌ଠୋକ୍ ବକ୍ତବ୍ୟ କୌଣସି ଭାରତୀୟ କ୍ରାନ୍ତିକାରୀର ନୁହେଁ। ଏକଦା ଭାରତରେ ଅବସ୍ଥାପିତ ବ୍ରିଟିଶ୍ ନୌସେନାଧକ୍ଷ ଏଡ଼୍‌ମିରାଲ୍ ସାର୍ ଏଡ଼୍‌ମଣ୍ଡ ସ୍ଲେଡ୍‌ଙ୍କ ଅଭିଜାତ୍ୟ କନ୍ୟା ମିସ୍ ମେଡଲିନ୍ ସ୍ଲେଡ୍ ଭାରତଛାଡ଼ ଆନ୍ଦୋଳନର ଅବ୍ୟବହିତ ପୂର୍ବରୁ ଏ କଥା ଜଣାଇ ଦେଇଥିଲେ ବଡ଼ଲାଟ୍‌ଙ୍କ ପ୍ରତିନିଧିଙ୍କୁ। କିଏ ଏହି ମିସ୍ ମେଡ଼୍‌ଲିନ୍ ଯାହାଙ୍କ ଧମନୀର ରକ୍ତ ଭାରତର ମୁକ୍ତି ପାଇଁ ଧାବିତ? ଭାରତ ଜନନୀପାଇଁ ତାଙ୍କର ରହିଛି ଏ ମମତା?

ବିବେକାନନ୍ଦଙ୍କ ଆଧ୍ୟାତ୍ମିକତାରେ ଆକର୍ଷିତା ହୋଇ ଭଗିନୀ ନିବେଦିତା, ଶ୍ରୀଅରବିନ୍ଦଙ୍କ ଦର୍ଶନରେ ଅନୁପ୍ରାଣିତା ହୋଇ ଶ୍ରୀମା ଭାରତବର୍ଷକୁ ସେମାନଙ୍କର କର୍ମଭୂମି ଭାବେ ବାଛିନେଲା ପରି ମହାତ୍ମା ଗାନ୍ଧୀଙ୍କ ତ୍ୟାଗ, ନିଷ୍ଠା, ସେବା, ସତ୍ୟ ଓ ଅହିଂସାର ମୋହନ ମନ୍ତ୍ରରେ ଟାଣି ହୋଇ ଆସିଥିଲେ ମିସ୍ ମେଡଲିନ୍। ପାଶ୍ଚାତ୍ୟର ସୁଖ, ସମ୍ଭୋଗ ପରିତ୍ୟାଗ କରି ଦେଇଥିଲେ। ଭାରତବର୍ଷର ଶିଳାବନ୍ଧୁର ପଥକୁ ସେ ପାଥେୟ କରିନେଲେ। ଜଣେ ଇଂରେଜ ସେନାଧକ୍ଷଙ୍କ ସୁକୁମାରୀ କନ୍ୟା ହୋଇ ମଧ୍ୟ ଇଂରେଜମାନଙ୍କ କବଳରୁ ଭାରତକୁ ମୁକ୍ତ କରିବା ପାଇଁ ସ୍ୱାଧୀନତା ମୁକ୍ତି ସଂଗ୍ରାମରେ ଝାସ ଦେଇ କାରାବରଣ କରିବାକୁ ସେ ଶ୍ରେୟ ମଣିଥିଲେ।

ମେଡଲିନ୍‌ଙ୍କ ଜନ୍ମ ୧୮୯୨ ନଭେମ୍ବର ୨୨ ତାରିଖରେ - ଲଣ୍ଡନ୍‌ରେ। ପରିବାରର ଆଭିଜାତ୍ୟପୂର୍ଣ୍ଣ ଜୀବନଯାତ୍ରା ପ୍ରତି ଶୈଶବରୁ ସେ ଥିଲେ ବିତସ୍ପୃହ। ବସ୍ତୁବାଦୀ ଦୁନିଆଁର ଦୂରରେ ଥିବା ପ୍ରାକୃତିକ ପରିବେଶ ମଧ୍ୟରେ ରହିବାକୁ ସେ ଭଲ ପାଉଥିଲେ। ତାରି ଭିତରେ କୌଣସି ଅଜ୍ଞେୟ ଶକ୍ତିର ସନ୍ଧାନରେ ସେ ଭାବାବିଷ୍ଟ ହୋଇପଡୁଥିଲେ। ବିଦ୍ୟାଳୟରେ ସମ୍ଭ୍ରାନ୍ତବଂଶୀୟ ସହପାଠୀମାନଙ୍କ ସଙ୍ଗସୁଖ ପ୍ରତି ତାଙ୍କର ଆଗ୍ରହ ନଥିଲା। ପକ୍ଷୀର କାକଳୀ, ପର୍ବତକାନନର ନିର୍ଜନତା, ସମୁଦ୍ରର ଗୁରୁଗର୍ଜନ ମଧ୍ୟରେ ସେ ଯେମିତି ପୁଲକି ଉଠୁଥିଲେ।

ତାଙ୍କୁ ୧୫ ବର୍ଷ ବୟସ ବେଳେ ପିତା ଏଡମିରାଲ ଏଡମଣ୍ଡ ଭାରତରେ ବ୍ରିଟିଶ୍ ନୌସେନାର ମୁଖ୍ୟ ଭାବେ ନିଯୁକ୍ତି ହୋଇ ଆସିଲେ ବମ୍ବେ। ମେଡ଼୍‌ଲିନ୍ ବି ଆସିଲେ ବାପାଙ୍କ ସହ। ଘରେ ରାଜକୀୟ ବାତାବରଣ। ସେଠାକୁ ତ ଏମିତି କେମିତି ଅତିଥି ଆସୁ ନଥିଲେ, ଆଜି ଗଭର୍ଣ୍ଣର ତ କାଲି ସେନାପତି। ଜାକଜମକ ଅଳଙ୍କାରରେ ବିଭୂଷିତ ରାଜନ୍ୟବର୍ଗ ଓ ପଦସ୍ଥ ଅଧିକାରୀମାନେ ତ ତାଙ୍କ ବାପାଙ୍କ ଦର୍ଶନ ପାଇଁ ଘଣ୍ଟା ଘଣ୍ଟା ପ୍ରତୀକ୍ଷା କରୁଥିଲେ। ଏମାନଙ୍କ ଗହଣରେ ମେଡ଼୍‌ଲିନ୍‌ଙ୍କୁ ଆନନ୍ଦ ମିଳୁ ନଥିଲା। ସେମାନେ ଆଣୁଥିବା ଦାମୀ ଉପଢ଼ୌକନଗୁଡ଼ିକ ବି ତାଙ୍କୁ ଆକର୍ଷିତ କରିପାରୁ ନଥିଲା।

ଦୁଇବର୍ଷ ଧରି ଭାରତର ବହୁ ଦର୍ଶନୀୟ ସ୍ଥାନ ସମେତ ଶ୍ରୀଲଙ୍କା, ଇରାନ୍, କୁଏତ୍, ବାହାରିନ୍, ମସ୍କଟ୍ ଆଦି ବ୍ୟାପକ ଭ୍ରମଣକରି ସେ

ହୋଇଥିଲେ ଫ୍ରାନ୍ସ । ଭାରତବର୍ଷର ନୈସର୍ଗିକ ସୌନ୍ଦର୍ଯ୍ୟ ଉପଭୋଗ କରିବା ଅବକାଶରେ ତାଙ୍କ ହୃଦୟ ତନ୍ତ୍ରୀରେ ସଙ୍ଗୀତର ଝଙ୍କାର ଉଠିଲା । ସଙ୍ଗୀତ ସାଧନା କରୁ କରୁ ବୀଥୋଭେନ୍ ପାଲଟିଗଲେ ତାଙ୍କ ଆଦର୍ଶ । ଜର୍ମାନୀ ଓ ଅଷ୍ଟ୍ରିଆରେ ବ୍ୟାପକ ଭ୍ରମଣ କରି ବୀଥୋଭେନ୍‌ଙ୍କ ଜନ୍ମପୀଠ, ସାଧାନାସ୍ଥଳୀ ଓ ସଂଗ୍ରହାଳୟରେ କିଛିଦିନ କଟାଇ ସେ ଜୀବନକୁ କଲେ ସଙ୍ଗୀତମୟ । ଏଇ ସମୟରେ ତାଙ୍କର ଭେଟ ହେଲା ବିଶିଷ୍ଟ ଫରାସୀ ଦାର୍ଶନିକ ତଥା ନୋବେଲ୍ ପୁରସ୍କାର ବିଜୟୀ ସାହିତ୍ୟିକ ରୋମାରୋଲାଁଙ୍କ ସଙ୍ଗରେ । ସାହିତ୍ୟ ସାଧନା ସହ ରୋମାରୋଲାଁ ଗାନ୍ଧିଜୀଙ୍କ ଦର୍ଶନ ଓ କାର୍ଯ୍ୟକଳାପ ପ୍ରତି ବିଶେଷ ଭାବେ ଆକୃଷ୍ଟ ହୋଇପଡ଼ିଥାନ୍ତି । ଗାନ୍ଧିଜୀଙ୍କ ସମ୍ପର୍କରେ ଫରାସୀ ଭାଷାରେ ବି ତାଙ୍କର ଏକ ପୁସ୍ତକ ସେତେବେଳେ ଛପା ହୋଇଥାଏ । ସାକ୍ଷାତ ଆଲୋଚନାରେ ବୀଥୋଭେନ୍ ସଙ୍ଗୀତ ପ୍ରେମୀ ମେଡ୍‌ଲିନ୍ ଦାର୍ଶନିକ ରୋମାରୋଲାଁଙ୍କ ସହ ତାଙ୍କ ଇପ୍‌ସିତ "ଅନ୍ୱେଷ" ସମ୍ପର୍କରେ ପ୍ରଶ୍ନକଲେ । ରୋମାରୋଲାଁଙ୍କଠାରୁ ଉତ୍ତର ମିଳିଲା ଏହାର ସମାଧାନ ଗାନ୍ଧିଜୀ ହିଁ କରିପାରିବେ ।

"ଗାନ୍ଧିଜୀ ! ସେ ପୁଣି କିଏ ?" – ପଚାରିଲେ ମେଡ୍‌ଲିନ୍ । ରୋମାରୋଲାଁଙ୍କ ରୋମାଞ୍ଚିକ୍ ଉତ୍ତରଥିଲା – "ଏ ହେଉଛନ୍ତି ଯୀଶୁ ମସିହାଙ୍କ ଅବତାର । ଏବେ ରହୁଛନ୍ତି ଭାରତରେ ।

ମନଟାଙ୍କର ଗାନ୍ଧିଜୀଙ୍କୁ ଖୋଜି ବୁଲିଲା । କିଛି ଦିନ ପରେ ରୋମାରୋଲାଁଙ୍କ ଦ୍ୱାରା ମହାତ୍ମା ଗାନ୍ଧିଙ୍କ ସମ୍ବନ୍ଧରେ ଲିଖିତ ପୁସ୍ତକ ତାଙ୍କ ହାତକୁ ଆସିଲା । ପୁସ୍ତକଟି ସମ୍ପର୍କରେ ତାଙ୍କର ପ୍ରଥମ ଅନୁଭୂତି ବର୍ଣ୍ଣନା କରି ମେଡ୍‌ଲିନ୍ ଲେଖିଛନ୍ତି, "ସେଦିନ୍ ସକାଳୁ ମୁଁ ରୋମାରୋଲାଁଙ୍କ ମହାତ୍ମା ଗାନ୍ଧି ପୁସ୍ତକ ପଢ଼ିବା ଆରମ୍ଭ କଲି । ବହିଟିରେ ଛାଡ଼ିବାକୁ ଇଚ୍ଛା ହେଉ ନଥିଲା । ମଧ୍ୟାହ୍ନ ଭୋଜନ ପାଇଁ ହୋଟେଲକୁ ଯିବାବେଳେ ବି ସେଇ ବହିଟିକୁ ସାଥିରେ ନେଲି । ଭୋଜନପରେ ପୁଣି ପଢ଼ିଚାଲିଲି ଯେ ସଞ୍ଜରେ ଶେଷ ହେଲା । ଏଥିରୁ ମୋତେ ଆଭାସ ମିଳିଲା ମୋର 'ଅନ୍ୱେଷ' ସମ୍ପର୍କରେ । ପୂର୍ବରୁ ରୋମାରୋଲାଁ ମୋତେ ଯେଉଁ ସୂଚନା ଦେଇଥିଲେ ତାହା ପୁସ୍ତକରେ ଏପରି ଚମତ୍କାର ଭାବେ ବର୍ଣ୍ଣନା କରାଯାଇଥିଲା ଯେ ବହିଟି ପଢ଼ିବା ବେଳୁ ଗାନ୍ଧିଜୀଙ୍କୁ ତୁରନ୍ତ ଭେଟିବା ପାଇଁ ମୋର ଇଚ୍ଛା ହେଉଥିଲା । ଅନ୍ୟାୟ, ଅତ୍ୟାଚାର ଓ ଶୋଷଣରେ ନିଷ୍ପେଷିତ ଭାରତବାସୀଙ୍କୁ ସତ୍ୟ, ଅହିଂସା ଓ ନିର୍ଭୀକତାର ପଥରେ ଆଗେଇ ନେବା ଲାଗି ଗାନ୍ଧିଜୀ ଯେପରି ସମର୍ପିତ ମନୋଭାବ ନେଇ ସେବା କରୁଛନ୍ତି ତାହା ପଢ଼ିବାପରେ ମୁଁ ବା ଆଉ ଅଟକି ରହିପାରନ୍ତି କେଉଁଠି ? ତାଙ୍କର କାର୍ଯ୍ୟ ଭାରତରେ କେନ୍ଦ୍ରୀଭୂତ ହୋଇଥିଲେ ମଧ୍ୟ ଏହା ଯେ ସାରା ମାନବ ସମାଜର କଲ୍ୟାଣ ପାଇଁ ଉଦ୍ଦିଷ୍ଟ ଏଥିରେ ମୋର ସନ୍ଦେହ ନଥିଲା ।"

ଏହାପରେ ଗାନ୍ଧୀଜୀଙ୍କୁ ଭେଟିବା ପାଇଁ ମନସ୍ଥିର କରିନେଲେ ମେଡ୍‌ଲିନ୍ । ଏହି ଇଚ୍ଛା ବ୍ୟକ୍ତକରି ସାବରମତୀରେ ଅନ୍ତେବାସିନୀ ହେବାର ସୁଯୋଗ ପାଇବା ପାଇଁ ଗାନ୍ଧିଜୀଙ୍କ ପାଖକୁ ସେ ଚିଠିଲେଖିଥିଲେ । ଚିଠି ସହ ୨୦ ପାଉଣ୍ଡର ଚେକ୍‌ଟିଏ ବି । (ତାଙ୍କ ପାଖରେ ଥିବା ଏକ ହୀରାର ପିନ୍ ବିକ୍ରୟ କରି ସେ ଏହି ଅର୍ଥ ପଠାଇଥିଲେ ।) କିଛି ଦିନର ପ୍ରତୀକ୍ଷା ପରେ ପୋଷ୍ଟକାର୍ଡ ଖଣ୍ଡେ ପାଇଲେ ସେ । ନିଜେ ଗାନ୍ଧିଜୀ ଲେଖିଥିଲେ– "ଆଶ୍ରମ ଜୀବନ ଏକ ଫୁଲ ଶଯ୍ୟା ନୁହେଁ, ଅତ୍ୟନ୍ତ କଠୋର, ଏଠାରେ ପ୍ରତି ଅନ୍ତେବାସୀଙ୍କୁ ଶରୀର ଶ୍ରମ କରିବାକୁ ପଡ଼ିଥାଏ । ଏ ଦେଶର ଜଳବାୟୁ ବିଷୟରେ ବି ତମର ଜାଣିବା ଦରକାର । ଏ କଥା ମୁଁ ତୁମକୁ ଡରାଇବା ପାଇଁ ଲେଖୁ ନାହିଁ, ଜଣାଇ ଦେବାକୁ ଲେଖୁଛି । × × ×" ତତ୍‌କ୍ଷଣାତ୍ ନିଜର ସମ୍ମତି ପଠାଇ ସାବରମତୀ ଯିବା ପାଇଁ ପ୍ରସ୍ତୁତି ଆରମ୍ଭ କଲେ ମେଡ୍‌ଲିନ୍ ।

୧୯୨୫, ନଭେମ୍ବର ୬ ତାରିଖ ଦିନ ମେଡ୍‌ଲିନ୍‌ଙ୍କ ଜାହାଜ ଲାଗିଲା ବମ୍ବେରେ । ଗାନ୍ଧୀଜୀଙ୍କଠାରୁ ଖବରପାଇ କେତେଜଣ ଭଦ୍ରବ୍ୟକ୍ତି ତାଙ୍କୁ ଅଭ୍ୟର୍ଥନା ଜଣାଇଲେ ବନ୍ଦର ଫାଟକ ନିକଟରେ । ପୂର୍ବ ପରିଚିତ ବମ୍ବେରେ ବିଶ୍ରାମ ପାଇଁ ସମୟ ନଷ୍ଟ ନ୍‌କରି ପରଦିନ ସକାଳ ଟ୍ରେନ୍‌ରେ ସେ ଚାଲିଲେ ଅହମ୍ମଦାବାଦ । ଗାନ୍ଧିଜୀଙ୍କ ସଚିବ ମହାଦେବ ଦେଶାଇ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଓ ୟଙ୍ଗ ଇଣ୍ଡିଆର ମୁଖ୍ୟ ବ୍ୟବସ୍ଥାପକ ସ୍ୱାମୀ ଆନନ୍ଦ ଅହମ୍ମଦାବାଦ ରେଲଷ୍ଟେସନ୍‌ରୁ ଏହି ନବାଗନ୍ତୁକା ବିଦେଶିନୀ ଯୁବତୀଙ୍କୁ ପାଛୋଟି ଆଣିଲେ ସାବରମତୀ ଆଶ୍ରମକୁ ।

ସାବରମତୀରେ ପ୍ରଥମ ଅନୁଭୂତି ବର୍ଣ୍ଣନା କରି ମେଡ୍‌ଲିନ୍ ଲେଖିଛନ୍ତି– "ଆଶ୍ରମ ଭିତରେ ଯାହାଙ୍କୁ ମୁଁ ଭେଟିଲି ସେ ଖଣ୍ଡେ ଆଣ୍ଠୁ ଲୁଚା ଲୁଗା ପିନ୍ଧିଥିଲେ, ଦେହ ଫୁଙ୍ଗୁଳା । ମୁହଁରେ ଦେବଶିଶୁର ନିଷ୍ପାପ, ନୈସର୍ଗିକ ଆଭା । ପରିଚିତ ହେବା ପୂର୍ବରୁ ଏହି ବ୍ୟକ୍ତିଙ୍କ ପାଦଛୁଇଁ ପ୍ରଣାମ କରିବାକୁ ସ୍ୱତଃସ୍ଫୁର୍ତ୍ତ ଭାବେ ମୁଁ ଝୁଙ୍କିପଡ଼ିଲି । ପାଦରେ ହାତ ବାଜିଛି କି ନାହିଁ, ଶ୍ରଦ୍ଧା ପୂର୍ବକ ସେ ମୋତେ ଉଠାଇ ନେଇ କହିଲେ – 'ଆଜିଠାରୁ ତମେ ମୋର ଝିଅ ହୋଇ ରହିବ' । ଏଇ ପଦିଏ କଥା ଓ ଆପିସ୍ୱତାରେ ପାଶ୍ଚାତ୍ୟର ବସ୍ତୁବାଦୀ ସଭ୍ୟତା ମୂଳଦୁଆ ଉପରେ ଗଢ଼ି ଉଠିଥିବା ମୋର ମନ ଭିତରେ ଆଧ୍ୟାତ୍ମିକତା ଓ ଅନ୍ତରଙ୍ଗତାର ଏକ ତରଙ୍ଗ ଖେଳିଗଲା । ସେହି ବ୍ୟକ୍ତିଙ୍କ ଆପଦମସ୍ତକକୁ କିଛି ସମୟ ମୁଁ ଚାହିଁ ରହିଲି । ତାଙ୍କ ଓଠରେ ବାତ୍ସଲ୍ୟ ମମତାର ହସ ଆଉ ଆଖିରେ ପୀଡ଼ିତ ଜନତାର ଅଶ୍ରୁମୋଚନ ପାଇଁ ଏକ ଦୃଢ଼ ସଙ୍କଳ୍ପର ଜ୍ୟୋତି । ମୁଁ ଅଭିଭୂତ ହୋଇ ପଡ଼ିଲି । ଏ ଥିଲେ ମହାମାନବ ମହାତ୍ମା ଗାନ୍ଧି ।"

ଇଂରେଜ ନୌସେନାଧ୍ୟକ୍ଷ ଏଡ୍‌ମିରାଲ୍ ଏଡ୍‌ମଣ୍ଡଙ୍କ ସମ୍ଭ୍ରାନ୍ତ ପରିବାରର ଚଳଣି ଓ ସାବରମତୀ ଆଶ୍ରମର ଆଚରଣବିଧି ମଧ୍ୟରେ ଥିଲା ଆକାଶ ପାତାଳ ଫରକ । ଏଠି ତୁଳିତଳ୍ପ ଶଯ୍ୟା ନଥିଲା କି ହୁକୁମ୍ ତାମିଲ୍ କରିବାକୁ ଚାକର, ଅଡରଲି, ଅର୍ଦ୍ଦଳୀଙ୍କ ଗହଳି ନଥିଲା । ଆରାମଦାୟକ ବୈଭବଶାଳୀ ଜୀବନଯାପନରୁ ଆଶ୍ରମ ଜୀବନର ଶୃଙ୍ଖଳା କେତେ କଠୋର ତାହା ମେଡ୍‌ଲିନ୍‌ଙ୍କୁ ଅଙ୍ଗେ ନିଭାଇବାକୁ ପଡ଼ିଲା । ଭୋର୍ ୪ ଟାରୁ ଉଠି ଠିକଣା ସମୟରେ ପ୍ରାର୍ଥନା ସ୍ଥଳୀରେ ପହଞ୍ଚିବା, ହାତରେ ଝାଡୁ ଧରି ଆଶ୍ରମ ସଫେଇ, ପାଇଖାନା ସଫେଇ ଇତ୍ୟାଦି । ପୁଣି ଶ୍ରମଦାନ, ସୂତାକଟା । କିଛି ଦିନ ଭିତରେ ତାଙ୍କ କଅଁଳ ହାତ ପାପୁଲିରେ କିଣ୍ଟି ବସିଗଲା । ଖାଦ୍ୟପେୟ ଅତି ସାଧାସିଧା, ନିରାମିଷ । ସାଧନା ଓ ଶୃଙ୍ଖଳା ଭିତରେ ଦୁରଣା ହୋଇପଡ଼ିଲେ

ମେଡ୍‌ଲିନ୍। ଗାନ୍ଧି ଓ କସ୍ତୁରବାଙ୍କ ପରିଚର୍ଯ୍ୟା ଓ ଅନ୍ତେବାସୀମାନଙ୍କ ଗହଣରେ ସୁସ୍ଥ ହୋଇ ଆସିବା ବେଳକୁ ତାଙ୍କର ଖୁଲିଚଳଣି., ବେଶଭୂଷା ସବୁ ବଦଳି ଯାଇଥାଏ। ପାଶ୍ଚାତ୍ୟ ବସ୍ତୁବାଦୀ ଆଭିଜାତ୍ୟର ଖୋଳପାଟା ଯେମିତି ତାଙ୍କ ଦେହରୁ ଝଡ଼ି ପଡ଼ିଥାଏ। ବେଶ୍ ଜଣେ ହିନ୍ଦୁସ୍ଥାନୀ ଝିଅ ପରି ପୋଷାକ ପରିଛଦ। ପୁଣି ବ୍ରହ୍ମଚର୍ଯ୍ୟ ପାଳନର ଶପଥ।

ମେଡ୍‌ଲିନ୍ ଏତେ ଶିଘ୍ର ଆଶ୍ରମ ଜୀବନ ସହ ନିଜକୁ ଖାପ ଖୁଆଇ ପାରିବେ ବୋଲି କେହି କଳ୍ପନା କରିନଥିଲେ। ବାପୁଜୀଙ୍କ ପାଖେ ପାଖେ ରହି ତାଙ୍କ କାମରେ ସାହାଯ୍ୟ କରିବା ସହ ସେ ତାଲିମ୍ ବି ନେଉଥିଲେ। ମୀରାବାଈ ଯେମିତି ତାଙ୍କ ଜୀବନକୁ କୃଷ୍ଣମୟ କରିଥିଲେ ସେହିପରି ବୀଥୋଭେନ୍ ସଙ୍ଗୀତ ସାଧିକା ମିସ୍ ମେଡ୍‌ଲିନ୍ ସ୍ଲେଡ୍ ନିଜ ଜୀବନକୁ କରିଦେଇଥିଲେ ଗାନ୍ଧୀମୟ। ପାଶ୍ଚାତ୍ୟ ସଭ୍ୟତାର ଖୋଳପା ଫିଙ୍ଗି ଭାରତର ଶୋଷିତ, ନିଷ୍ପେସିତ ଜନତାଙ୍କ ସେବାରେ ନିଜକୁ ଉତ୍ସର୍ଗ କରିବା ପାଇଁ ଆଗେଇ ଆସିଥିବା ବ୍ରିଟିଶ୍ ଯୁବତୀଙ୍କୁ ଗାନ୍ଧିଜୀ ଆଦରରେ ଡାକୁଥିଲେ ମୀରା ବହନ୍ ବା ମୀରାବେନ୍। ଅଲିଅଳୀ କନ୍ୟା ମେଡଲିନ୍ ହୋଇଗଲେ ସତ୍ୟ, ଅହିଂସା ଓ ସେବାର ସାଧିକା ମୀରାବେନ୍।

ଇଂଲଣ୍ଡର ସମସ୍ତ ମୋହମାୟା ତୁଟାଇ ଭାରତକୁ ନିଜର କର୍ମଭୂମି ଭାବେ ଆଦରି ନେଇଥିବା ମୀରାବେନ୍ ଦିଲ୍ଲୀର କନ୍ୟା ଗୁରୁକୁଳ ଆଶ୍ରମରେ ରହି ନୀତି ଶିକ୍ଷା କରିଛନ୍ତି। ସେଠାରେ ସ୍ୱାମୀ ଶ୍ରଦ୍ଧାନନ୍ଦଙ୍କଠାରୁ ଭାରତୀୟ ସଂସ୍କୃତି, ଦର୍ଶନ ବିଷୟରେ ବି ଜ୍ଞାନ ଆହରଣ କରିଛନ୍ତି। ହରିଦ୍ୱାରର ଗୁରୁକୁଳ କାଙ୍ଗ୍‌ଡ଼ି, ରିଷ୍ଟାଡ଼ିର ଭଗବତ୍ ଆଶ୍ରମ ଓ ପରେ ବିନୋବାଜୀଙ୍କ ଆଶ୍ରମରେ ବି ସେ ମୌଳିକ ଶିକ୍ଷା, ହୀନ୍ଦୀ, ସଂସ୍କୃତ, ଭାରତୀୟ ସଂସ୍କୃତି, ଦର୍ଶନ, ଗୀତା, ରାମାୟଣ, ଉପନିଷଦ ଆଦି ଅଧ୍ୟୟନ କରିଛନ୍ତି। କୋରାନ୍, ବାଇବେଲ୍ ବି ପଢ଼ିଛନ୍ତି। ଏ ସବୁ ତାଙ୍କ ଜୀବନ ଓ କାମ ଉପରେ ବିଶେଷ ପ୍ରଭାବ ପକାଇଛି।

ଓଡ଼ିଶାର ପ୍ରତ୍ୟେକଥିରେ ପଦଯାତ୍ରା ସମେତ ବିଭିନ୍ନ କାର୍ଯ୍ୟକ୍ରମରେ ମୀରାବେନ୍ ଗାନ୍ଧିଜୀଙ୍କ ପାଖେ ପାଖେ ରହିଛନ୍ତି, ଦେଶର କୋଣ ଅନୁକୋଣ ବୁଲିଛନ୍ତି। ଖଦୀ ପ୍ରଚାର, ହରିଜନସେବା, ବିଭିନ୍ନ ଗଠନାତ୍ମକ କାର୍ଯ୍ୟକ୍ରମରୁ ଭାରତଛାଡ଼ ଆନ୍ଦୋଳନ ପର୍ଯ୍ୟନ୍ତ ବିଭିନ୍ନ କ୍ଷେତ୍ରରେ ସାମିଲ୍ ହୋଇଛନ୍ତି। ଭାରତବର୍ଷରେ ହେଉ ବା ବିଦେଶରେ ହେଉ ସେ ଯେଉଁଆଡ଼େ ଯାଇଛନ୍ତି ବ୍ରିଟିଶ୍ ଗୋଇନ୍ଦା ପୋଲିସ୍ ତାଙ୍କର ପିଛା କରିଛି, ଭାଷଣ ଟେପ୍ କରିଛି। ବାରମ୍ବାର ପୋଲିସ୍ ନିର୍ଯାତନାର ମୁକାବିଲା କରିଛନ୍ତି। ବହୁଥର ଜେଲ୍ ଯାଇଛନ୍ତି। ଇଂରେଜ ଶାସନରୁ ମୁକ୍ତ ହେବାପରେ ଭାରତର ଉନ୍ନତି କିପରି ହେବ, ବିକାଶ ଯୋଜନା କ'ଣ ହେବ, ପର୍ଯ୍ୟାବରଣର ସୁରକ୍ଷାସହ କୃଷି ଓ କୃଷକର ବିକାଶ, ଗାଁ ଲୋକଙ୍କ ହାତରେ ମମତା ପହଞ୍ଚିବା ପରି ବହୁ କ୍ରାନ୍ତିକାରୀ ପରିକଳ୍ପନା ମଧ୍ୟ ସେ କରିଯାଇଛନ୍ତି।

୧୯୩୨ରେ ଗାନ୍ଧିଜୀ ଗିରଫ ହେବା ପରେ ଖଦୀର ପ୍ରଚାର ପ୍ରସାର କାମରେ ଦେଶର ବିଭିନ୍ନ ଅଞ୍ଚଳ ଗସ୍ତକରି ସେ କର୍ମୀମାନଙ୍କ ସହ ପ୍ରତ୍ୟକ୍ଷ ସମ୍ପର୍କ ରଖୁଥିଲେ। ୧୯୩୨ରେ ସବିନୟ ଅବଜ୍ଞା ଅସହଯୋଗ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରି ସେ କାରାବରଣ କରିଛନ୍ତି। କାରାମୁକ୍ତ ହେବା ପରେ ନିଷେଧାଦେଶ ଭଙ୍ଗ କରି ପୁଣି ବମ୍ବେରେ ଗିରଫ ହୋଇଛନ୍ତି। ୧୯୩୪ରେ ଗାନ୍ଧୀଙ୍କ ହରିଜନ ପଦଯାତ୍ରାରେ ଯୋଗଦେଇ ଓଡ଼ିଶାର ଗାଁ ଗହଳ ବୁଲିଛନ୍ତି ସହ ରମାଦେବୀ, ସରଳାଦେବୀ ପ୍ରମୁଖଙ୍କ ସହିତ କାମ କରିଛନ୍ତି। ବିଭିନ୍ନ ସମୟରେ ଗାନ୍ଧୀଜୀଙ୍କର ସ୍ୱତନ୍ତ୍ର ଦୂତ ଭାବେ ଇଂଲଣ୍ଡ, ଆମେରିକା ଯାଇଛନ୍ତି। ଏପରିକି ଭାରତର ସ୍ୱାଧୀନତା ପାଇଁ ଉଇନ୍‌ଷ୍ଟନ୍ ଚର୍ଚ୍ଚିଲ୍‌ଙ୍କ ସହ ମଧ୍ୟ ଆଲୋଚନା କରିଛନ୍ତି। ଜାପାନୀମାନଙ୍କ ଓଡ଼ିଶା ଉପକୂଳରେ ରଣସଜ୍ଜାର ଖବର ପାଇ ସେ ଓଡ଼ିଶା ଆସିଛନ୍ତି, କଂଗ୍ରେସ କର୍ମୀ ଓ ଜନସାଧାରଣଙ୍କୁ ହିମ୍ମତ୍ ଦେବାସହ ଭୀତତ୍ରସ୍ତ ସରକାରୀ କଳକୁ ମାର୍ଗ ଦର୍ଶନ ଦେଇଛନ୍ତି। ସବୁ କାମ ଭିତରେ ଭାରତୀୟ ସଂସ୍କୃତି, ସାହିତ୍ୟ ଓ ଦର୍ଶନ ଶିକ୍ଷାରୁ ସେ ବିରତ ହୋଇ ନାହାନ୍ତି। ଏପରିକି ୧୯୪୧ରେ ପ୍ରାୟ ଏକ ବର୍ଷ ମୌନବ୍ରତ ପାଳନ ଅବସରରେ ଋଗ୍‌ବେଦର ଅଧ୍ୟୟନ ସହ ସେ ତାହାର ଅନୁବାଦ ବି କରିଛନ୍ତି।

୧୯୪୨ରେ ଯେତେବେଳେ ସାରାଦେଶରେ ଗାନ୍ଧିଜୀଙ୍କ "କରେଙ୍ଗେ ୟା ମରେଙ୍ଗେ" "ଇଂରେଜ ଭାରତ ଛାଡ" ଧ୍ୱନୀ ପ୍ରତିଧ୍ୱନିତ ହୋଇଛି ସେତେବେଳେ ସେ ସକ୍ରିୟ ଅଂଶ ଗ୍ରହଣ କରି ବନ୍ଦୀ ହୋଇଛନ୍ତି। ଏହା ପୂର୍ବରୁ ସେ ଗାନ୍ଧିଜୀଙ୍କ ଦୂତ ଭାବେ ବଡଲାଟଙ୍କ ପ୍ରତିନିଧିଙ୍କୁ ଭେଟି ଭାରତର ସ୍ୱାଧୀନତା ପାଇଁ ଯେପରି ଗୋଳ୍‌ଟେବୁଲ୍ ଗୁଡ଼ି ବାଡ଼ିବା ସହ ଇଂରେଜ ସରକାରଙ୍କୁ ଚେତାବନୀ ଦେଇଥିଲେ ତାହା ଭାରତ ଇତିହାସର ଏ ଦୁର୍ଲଭ ଦଲିଲ୍ ହୋଇ ରହିଛି ଏବଂ ରହିବ। ପରେ ବନ୍ଦୀ ହୋଇ ସେ ଗାନ୍ଧିଜୀ ଓ କସ୍ତୁରବାଙ୍କ ସହ ରହିଛନ୍ତି ପୁନାର ଆଗାର୍ଖାଁ ମହଲରେ। ସେଠାରେ ସେ ଦେଖିଛନ୍ତି ସ୍ୱାଧୀନତାର ଯଜ୍ଞବେଦୀରେ ମହାଦେବ ଦେଶାଇ ଓ କସ୍ତୁରବାଙ୍କ ଚିତାଗ୍ନି।

କାରାମୁକ୍ତ ହେବାପରେ ମୀରାବେନ୍ ହରଦ୍ୱାର ନିକଟରେ 'କିସାନ ଆଶ୍ରମ' ପ୍ରତିଷ୍ଠା କରିଥିଲେ। ପରେ ଉତ୍ତର ପ୍ରଦେଶ ସରକାର ତାଙ୍କର ଅବୈତନିକ ସେବା ଗ୍ରହଣ କରି କୃଷି ଓ ପଶୁ ସମ୍ପଦର ବିକାଶ, ଜଙ୍ଗଲ ସୁରକ୍ଷା, ମୃତ୍ତିକା ସଂରକ୍ଷଣ, ଖଦୀର ପ୍ରସାର ଓ ସାମ୍ପ୍ରଦାୟିକ ସୌହାର୍ଦ୍ଦ୍ୟ ରକ୍ଷା ପାଇଁ ସ୍ୱତନ୍ତ୍ର ଯୋଜନାମାନ ଚଳାଇଥିଲେ। ଏହାପରେ ସେ ଋଷିକେଶ ନିକଟରେ ପଶୁଲୋକ ଆଶ୍ରମ, ଟିହିରୀ ଗଡ଼୍‌ୱାଲରେ ଗୋପାଳ ଆଶ୍ରମ ଓ ହରିଜନମାନଙ୍କ ବିକାଶ କଳ୍ପେ ବାପୁଗ୍ରାମ ପ୍ରତିଷ୍ଠା ଆଦି ସ୍ଥାପନ କରିଥିଲେ। କାଶ୍ମୀର ବିବାଦ ସମାଧାନ ପାଇଁ ଉଦ୍ୟମ ଅବ୍ୟାହତ ରଖିବା ସହ ସ୍ତ୍ରୀ ଶକ୍ତି ଜାଗରଣ କାର୍ଯ୍ୟକ୍ରମରେ ବି ସେ ନିଜକୁ ନିୟୋଜିତ କରିଥିଲେ। ମୀରାବେନ୍ ଯେଉଁ ଅଞ୍ଚଳରେ କାମ କରିଛନ୍ତି ସେ ଅଞ୍ଚଳର ଲୋକେ ତାଙ୍କୁ ପରିବାରଭୁକ୍ତ କରିଛନ୍ତି। ସେମାନଙ୍କ ପାଇଁ ତ ସେ ଥିଲେ ସାକ୍ଷାତ ବରଦାୟିନୀ ଦେବୀ।

ଗାନ୍ଧିଜୀ ସାବରମତୀ ଛାଡ଼ି ସେବାଗ୍ରାମ ଆସିବା ପୂର୍ବରୁ ସେବାଗ୍ରାମ ମୀରାବେନ୍‌ଙ୍କ କର୍ମକ୍ଷେତ୍ର ହୋଇ ସାରିଥିଲା। ସେବାଗ୍ରାମ ରହଣୀ ବେଳେ ନିକଟବର୍ତ୍ତୀ ଗ୍ରାମମାନଙ୍କରେ କାମ

କରିବା ସହ ଆଶ୍ରମ କୃଷି କ୍ଷେତ୍ରର ଦାୟିତ୍ୱ ଥିଲା ତାଙ୍କ ଉପରେ । ଋଷିକେଶ ନିକଟରେ ଶ୍ରୀ ବାପୁଜୀଙ୍କର ତାଙ୍କର ତତ୍ତ୍ୱାବଧାନରେ ହିଁ ତିଆରି ହୋଇଥିଲା । ପରେ ପ୍ରକୃତି ଉପାସିକା ମୀରାବେନ୍ ହିମାଳୟ ପାର୍ବତ୍ୟାଞ୍ଚଳକୁ ନିଜର କର୍ମକ୍ଷେତ୍ର ଭାବେ ବାଛି ନେଇଥିଲେ ।

ଦେଶ ସ୍ୱାଧୀନ ହେଲା । ଅଖଣ୍ଡ ଭାରତ ବିଖଣ୍ଡିତ ହେବା ସହ ଗାନ୍ଧିଙ୍କ ସ୍ୱରାଜ ଓ ରାମ ରାଜ୍ୟ ପରିକଳ୍ପନା କେବଳ ସ୍ୱପ୍ନରେ ରହିଗଲା । ଦେଶ ବିଭାଜନ, କ୍ଷମତା କନ୍ଦଳ, ସାମ୍ପ୍ରଦାୟିକ ଦଙ୍ଗା ଗାନ୍ଧିଜୀଙ୍କ ମନରେ ଘୋର ଆଘାତ ଦେଲା । ସରକାରୀ ଗଦିରେ ଗୋରା ଲୋକଙ୍କ ବଦଳି କଳାଲୋକ ଦଖଲ କଲେ, ଶୋଷଣ ବ୍ୟବସ୍ଥା କିନ୍ତୁ ଭାଙ୍ଗିଲା ନାହିଁ । ନେତାମାନଙ୍କର ଆଡ଼ମ୍ବରପୂର୍ଣ୍ଣ ଜୀବନଯାତ୍ରାରେ ବ୍ୟଥିତ ଗାନ୍ଧିଜୀଙ୍କୁ ରାଷ୍ଟ୍ରପତି ଭବନ ସାମନାରେ କୁଡ଼ିଆଟିଏ କରି ରହିବା ପାଇଁ ପ୍ରବର୍ତ୍ତାଉଥିଲେ ମୀରାବେନ୍ । ତେବେ ଦେଶର ସ୍ୱାର୍ଥ ଦୃଷ୍ଟିରୁ ଗାନ୍ଧିଜୀ ମନର ଯନ୍ତ୍ରଣା ମନରେ ଚାପି ନୀରବ ରହିଲେ ।

୧୯୪୮ ଜାନୁଆରୀ ୩୦ ତାରିଖ । ଆତତାୟୀର ଗୁଳି ମାଡ଼ରେ ଜାତିର ଜନକ ଢଳି ପଡ଼ିଲେ । ବାସ୍ତବରେ ତାଙ୍କର ଶେଷ ସତ ହେଲା । କିଛି ବର୍ଷତଳେ ନିଜେ ଗାନ୍ଧିଜୀ କହିଥିଲେ, "ମୁଁ ରୋଗରେ ନହିଁ ମରୁଛି, ଭୋକରେ ସେ ନାହିଁ ମରୁଛି, ମରୁଛି ତେ ଗୋଟିଏ ଗୁଳି ଦ୍ୱାରା ହିଁ ମରୁଛି" ଗାନ୍ଧିଜୀଙ୍କ ମୃତ୍ୟୁରେ ଗଠନାତ୍ମକ କର୍ମୀମାନେ ସ୍ତବ୍ଧ ହୋଇ ପଡ଼ିଥିବା ବେଳେ ସାଧିକା ମୀରାବେନ୍ କହିଲେ, ମୋ ପାଇଁ ଈଶ୍ୱର ଓ ବାପୁ ଦୁଇଜଣ ଥିଲେ । ଏବେ ଏ ଦୁହେଁ ଏକାକାର ହୋଇଗଲେ ××× ବାପୁଜୀ ବିଦେଶୀ ଶକ୍ତି ବିରୋଧରେ ଆଧ୍ୟାତ୍ମିକ ବଳରେ ଅହିଂସା ସଂଗ୍ରାମ ଚଳାଇଥିଲେ, ଏବେ ଆମକୁ ପକ୍ଷପାତି, ଈର୍ଷା, ଦ୍ୱେଷ, କ୍ଷମତା ଲିପ୍ସା, ସାମ୍ପ୍ରଦାୟିକତା, ଅସ୍ପୃଶ୍ୟତା, ଦାରିଦ୍ର୍ୟ ପ୍ରଭୃତି ବିରୋଧରେ ଲଢ଼ିବାକୁ ପଡ଼ିବ । ବିଦେଶୀଙ୍କ ବିରୋଧରେ ନୁହେଁ ଦେଶୀୟ ଶକ୍ତି ବିରୋଧରେ ଏ ଲଢ଼େଇ । ଈଶ୍ୱର ଆମକୁ ଶକ୍ତି ଦିଅନ୍ତୁ—ଆମେ ଆମ ଅନ୍ତଃକରଣକୁ ମାର୍ଜିତ କରୁ । ଯାହାଫଳରେ ଆମେ ଆଗରେ ଥିବା ମହାନ ଲକ୍ଷ୍ୟ ପ୍ରାପ୍ତି କରିପାରିବା ।

ମୀରାବାଇ ନିଜକୁ କୃଷ୍ଣମୟ କରିବା ପରି ମୀରାବେନ୍ ତାଙ୍କ ଜୀବନକୁ ଗାନ୍ଧିମୟ କରିଦେଇଥିଲେ । ସ୍ୱାଧୀନ ଭାରତରେ ଗାନ୍ଧିବାଦର ବିଳୟ ତାଙ୍କୁ ଖୁବ୍ ବାଧୁଥିଲା । ଶେଷରେ ମୀରାବେନ୍ ୟୁରୋପ ଫେରିଲେ ସେଠାରେ ପୁଣି ବାଥୋଭେନ୍ ସଙ୍ଗୀତ ଉପରେ ଅଧ୍ୟୟନ କରିବା ସହ ଗାନ୍ଧି ଦର୍ଶନର ପ୍ରଚାର ପ୍ରସାର କାମରେ ଲାଗିପଡ଼ିଲେ । ଗାନ୍ଧି ଦର୍ଶନ ବୀଥୋଭେନ୍‌ଙ୍କ ଜୀବନ ଗାଥା, ଭାରତର ଗ୍ରାମୋତ୍‌ଥାନ୍ ଓ ଦାରିଦ୍ର୍ୟ ଦୂରୀକରଣ ସାମାଜିକ ସଂସ୍କାର ଓ ନିଜର ଜୀବନୀ ("ଦି ସ୍ପିରିଟ୍‌ସ୍ ପିଲିଗ୍ରିମେଜ୍") ପ୍ରଭୃତି ରଚନାରେ ସେ ମନୋନିବେଶ କଲେ ।

ଇଂଲଣ୍ଡ ମାଟିରେ ଜନ୍ମଗ୍ରହଣ କରି ଭାରତମାତାର ପୂଜାର୍ଚ୍ଚନାରେ ନିଜ ଜୀବନ ସୁମନକୁ ଅଞ୍ଜଳି ଟେକି ନେଇଥିବା ଏହି ବ୍ରହ୍ମଚାରିଣୀ, ସାଧିକା ପୂଜ୍ୟା ମୀରାବେନ୍‌ଙ୍କର ୧୯୮୨ ଜୁଲାଇ ୩୦ ତାରିଖରେ ପ୍ରାୟ ୯୦ ବର୍ଷ ବୟସରେ ଦେହାବସାନ ଘଟିଲା ସୁଦୂର ଅଷ୍ଟ୍ରିଆର ଭିଏନା ନିକଟବର୍ତ୍ତୀ ଏକ ଗ୍ରାମରେ । ସେଠାରେ ମୃତ ଲୋକଙ୍କୁ କବର ଦିଆଯିବା ବିଧି । କିନ୍ତୁ, ମୀରାବେନ୍‌ଙ୍କ ଅନ୍ତିମ ଇଚ୍ଛାକୁ ସମ୍ମାନ ଦେଇ ସମ୍ପୂର୍ଣ୍ଣ ଭାରତୀୟ ରୀତିରେ ତାଙ୍କ ମର ଶରୀରର ସଂସ୍କାର କରାଗଲା । ରାମେଶ୍ୱର ଦତ୍ତ ତାଙ୍କୁ ମୁଖାଗ୍ନି ଦେବାର ସୌଭାଗ୍ୟ ପାଇଲେ । ପରେ ତାଙ୍କର ଚିତାଭସ୍ମ ଭାରତ ଆଣାଯାଇ ଋଷିକେଶ, ହରିଦ୍ୱାର ଓ ଅନ୍ୟାନ୍ୟ ପୀଠସ୍ଥଳୀରେ ବିସର୍ଜନ କରାଯାଇଥିଲା । ମିସ୍ ମେଡଲିନ୍ ସ୍ଲେଡ୍‌ଙ୍କୁ ଲୋକେ ଭୁଲିଯାଇ ପାରନ୍ତି, କିନ୍ତୁ ମୀରାବେନ୍ ଭାରତୀୟ ସଂଗ୍ରାମ ସେବା ଓ ସଂସ୍କାର ଇତିହାସର ଏକ ଅତୁଳା ଅଧ୍ୟାୟ ହୋଇ ରହିଛନ୍ତି ଓ ରହିଥିବେ ମଧ୍ୟ ।

ଉତ୍କଳ ଗାନ୍ଧୀ ସ୍ମାରକ ନିଧି
ଏନ୍-୬/୪୭୨, ଭୁବନେଶ୍ୱର-୧୫
ଫୋନ୍-୫୭୩୧୯



ଭୁବନେଶ୍ୱରଠାରେ ଓଡ଼ିଶା ପ୍ରଗତି କୃଷକ ପରିଷଦ ଦ୍ୱାରା ଆୟୋଜିତ ଏକ କୃଷକ ମେଳାରେ କୃଷି ମନ୍ତ୍ରୀ ଶ୍ରୀ ଜଗନ୍ନାଥ ମଲ୍ଲିକ ଉଦ୍‌ବୋଧନ ଦେଉଛନ୍ତି ।

# ଚମ୍ପାଦେବୀ : ଏକ ସୁରଭିତ ପ୍ରତିଭା

ଡ଼ିଃ ରାଜେନ୍ଦ୍ର ରାଜୁ

ଯୁଗ ଅତୀତ ହୋଇଛି । ଦେଶର ସ୍ୱାଧୀନତା ସଂଗ୍ରାମ ବର୍ତ୍ତମାନ ଇତିହାସର ବିଷୟ । ଯେଉଁ ଅଗଣିତ ନରନାରୀ ବାପୁଜୀଙ୍କ ନେତୃତ୍ୱରେ ବିଦେଶୀ ସରକାର ବିରୁଦ୍ଧରେ ଲଢ଼ି ବହୁ ଦୁଃଖ ନିର୍ଯ୍ୟାତନା ଭୋଗକରି ଦେଶର ସ୍ୱାଧୀନତା ଆଣିଥିଲେ ସେମାନଙ୍କ ମଧ୍ୟରୁ ଚମ୍ପାଦେବୀ ଅନ୍ୟତମ । ଗଞ୍ଜାମର ସ୍ୱନାମଧନ୍ୟ ସଂସ୍କାରକ ଜୟମଙ୍ଗଳ ରଥଙ୍କ ଆଶାତୀତ ପ୍ରେରଣା ପାଇ ସେ ତତ୍‌କାଳୀନ ସମାଜର ସମସ୍ତ ବ୍ୟଙ୍ଗ ବିଦ୍ରୁପକୁ ଉପେକ୍ଷା କରି ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିଲେ ।

ବିପ୍ଳବିଣୀ ଚମ୍ପାଦେବୀ ଗଞ୍ଜାମ ଜିଲ୍ଲାର ଏକ ଅଖ୍ୟାତ ପଲ୍ଲୀରେ ୧୯୦୪ ମସିହାରେ ଜନ୍ମ ଗ୍ରହଣ କରିଥିଲେ । ସେ ଖୁବ୍ କମ୍ ଦିନ ବୈବାହିକ ଜୀବନ ବିତାଇବା ପରେ ବିଧବା ହୋଇଥିଲେ । ବୈଧବ୍ୟ କଷ୍ଟ ହିଁ ତାଙ୍କ ଜୀବନରେ ଜନସେବା ପାଇଁ ଏକ ସୁବର୍ଣ୍ଣ ସୁଯୋଗ ଆଣି ଦେଇଥିଲା । ୧୯୩୦ ମସିହାରେ ସେ ପତିତମାନଙ୍କୁ ଉଦ୍ଧାର କରିବା ପାଇଁ ତଥା ଅନାଥ ସନ୍ତାନମାନଙ୍କୁ ଥଇଥାନ କରିବା ପାଇଁ ଇଚ୍ଛାପୁରରେ ଗୋଟିଏ ଅନାଥଶ୍ରମ ସ୍ଥାପନ କରିଥିଲେ । ସେଠାରେ ସେ ଅସହାୟ ଶିଶୁମାନଙ୍କୁ ପାଳନ କରି ସେମାନଙ୍କର ସମ୍ପୂର୍ଣ୍ଣ ଦାୟିତ୍ୱ ନେଲାବେଳେ ବାପୁଜୀଙ୍କ ଆହ୍ୱାନ ତାଙ୍କୁ ବିବ୍ରତ କଲା ।

୧୯୪୨ ମସିହାରେ ଭାରତଛାଡ଼ ଆନ୍ଦୋଳନ ସାରା ଭାରତରେ ତେଜି ଉଠିଲା । ସରକାରଙ୍କ ସହ ଅସହଯୋଗ କରିବାପାଇଁ ଭଞ୍ଜନଗର ପୋଲିସ୍‌ଥାନା ନିକଟରେ ଏକ ବିରାଟ ସଭା ତଥା ପିକେଟିଂ ହୋଇଥିଲା । ଏହି ସାଧାରଣ ସଭାରେ ଚମ୍ପାଦେବୀ ଇଂରେଜ ସରକାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେ ଯାହାକି ତତ୍‌କାଳୀନ ସରକାରଙ୍କୁ ଅସହ୍ୟ ହେଲା । ସେ ସେହି ସଭା ସ୍ଥାନରୁ ଗିରଫ ହୋଇ ଭଞ୍ଜନଗର ଜେଲ୍‌ରେ ରହିଲେ । ଚମ୍ପାଦେବୀ ଏକ ମାତ୍ର ମହିଳା ବନ୍ଦୀ ରୂପେ ସେଠାରେ ଦିନ ବିତାଇଥିଲେ । ସେଠାରେ ତାଙ୍କୁ ପେଟପୁରା ଖାଦ୍ୟ ମିଳୁନଥିଲା । ଖାଁଟିଏ ଦୋଳା ଭାତ, କିଛି ଡାଲି ଓ ତରକାରୀ ବିନା ଅନ୍ୟ କିଛି ପାଉ ନଥିଲେ । ପେଟପୁରା ଖାଦ୍ୟ ନ ପାଇ ଭୋକ ଉପାସରେ ଜେଲର ରୁଦ୍ଧ କୋଠରୀ ମଧ୍ୟରେ ଥିଲେ ମଧ୍ୟ ତାଙ୍କ ମନରେ ଟିକିଏ ବିଷାଦ ନଥିଲା । ଏହା ଥିଲା ତାଙ୍କ ବନ୍ଦୀ ଜୀବନର ବିଶେଷତ୍ୱ ।

ଜେଲରେ ପ୍ରାୟ ଦୁଇ ବର୍ଷ ପର୍ଯ୍ୟନ୍ତ ରହିବା ଫଳରେ ତାଙ୍କର ହୃଦୟ ଯେପରି ବ୍ରିଟିଶ ସରକାର ବିରୁଦ୍ଧରେ ବିପ୍ଳବ କରି ଉଠିଲା ସେହିପରି ସମାଜର କୁସଂସ୍କାର ବିରୋଧରେ ବିପ୍ଳବ କରି ଉଠିଲା ସମାଜର କୁସଂସ୍କାର ବିରୋଧରେ ସ୍ୱାଧୀନ ଦୃଢ଼ମତ ପ୍ରକାଶ କରିବାରେ ଓ ନିଃସହାୟଙ୍କର ସେବା କରିବାରେ ତାଙ୍କ ମନ ଅଧିକ ଦୃଢ଼ ହେଲା । ଭାରତର ସ୍ୱାଧୀନତା ଲାଭପରେ ସେ ବ୍ରହ୍ମପୁର ସହରକୁ ନିଜ କର୍ମକ୍ଷେତ୍ର ରୂପେ ବାଛି ସେଠାରେ ଅନାଥାଶ୍ରମ ପ୍ରତିଷ୍ଠା କରିଥିଲେ । ବ୍ରହ୍ମପୁରରେ ଆଶ୍ରମ ପ୍ରତିଷ୍ଠା ଦିଗରେ ମୋହନ ନାୟକ କାମାକ୍ଷୀପ୍ରସାଦ ଶର୍ମା ଓ ଦିଗାପହ ରଥ ପ୍ରମୁଖ ବହୁ ବ୍ୟକ୍ତି ତାଙ୍କୁ ସାହାଯ୍ୟ କରିଥିଲେ । ଆଶ୍ରମର ସର୍ବାଙ୍ଗୀନ ଉନ୍ନତି ପାଇଁ ସେ ଆପ୍ରାଣ ଚେଷ୍ଟାକରି ଅନେକ ଅସହାୟ ମହିଳାଙ୍କୁ ଥଇଥାନ କରିଥିଲେ ।

ବ୍ରାହ୍ମଣ ଘରର ବୋହୂ ହୋଇ ବି ତାଙ୍କର ହରିଜନମାନଙ୍କ ପ୍ରତି ଘୃଣା ନଥିଲା । ସେ ରମାଦେବୀଙ୍କ ପରି ହରିଜନ ବସ୍ତିରେ ରହି ସେମାନଙ୍କର ସାମୂହିକ ଉନ୍ନତି କରିଥିଲେ । ଚମ୍ପାଦେବୀଙ୍କ ସ୍ନେହ ଓ ମମତାରେ ହରିଜନମାନେ ପାଗଳ ହୋଇ ତାଙ୍କୁ ନାନୀ---ନାନୀ---କହି ତାଙ୍କ ପାଦ ତଳେ ପଡ଼ି ଯାଉଥିଲେ । ସେ ହରିଜନ ପଡ଼ାରେ ରହୁଥିବା ଯାଗାରେ ସନ୍ଧ୍ୟାରେ ପ୍ରତିଦିନ ହରିଜନମାନେ ଭଜନ କୀର୍ତ୍ତନ କରୁଥିଲେ । ହରିଜନମାନଙ୍କର ସାମୂହିକ ଉନ୍ନତି କରିବା ସହ ସେ ଗିରିଜନମାନଙ୍କର ଉନ୍ନତି ପାଇଁ ଫୁଲବାଣୀରେ ଗୋଟିଏ ଆଶ୍ରମ ପ୍ରତିଷ୍ଠା କରିଥିଲେ । ଫୁଲବାଣୀରେ ସେ କିଛି ଦିନ ରହିବା ପରେ କ୍ୟାନସର ରୋଗରେ ଆକ୍ରାନ୍ତ ହେଲେ । ରୋଗଯନ୍ତ୍ରଣାରେ ସେ କଷ୍ଟ ପାଉଥିଲେ ମଧ୍ୟ ସେବା କାର୍ଯ୍ୟରୁ ବିରତ ହୋଇନଥିଲେ । ପରିଶେଷରେ ସେ କଟକ ହସପିଟାଲ୍‌ରେ ମୃତ୍ୟୁ ବରଣ କଲେ ।

ଆଜି ଚମ୍ପାଦେବୀ ନାହାନ୍ତି ସତ କିନ୍ତୁ ସେ ରମାଦେବୀ ଓ ସରଳା ଦେବୀଙ୍କ ପରି ଅନେକ କାର୍ଯ୍ୟକରିଛନ୍ତି ଯାହାର ତୁଳନା ନାହିଁ । ତାଙ୍କର ଅବଦାନ ଓଡ଼ିଆ ଇତିହାସର ଏକ ଅବିସ୍ମରଣୀୟ ଅଧ୍ୟାୟ ଅଟେ ।

*କଣ୍ଟେଇପଲ୍ଲୀ ବିଦ୍ୟୁତ୍ କଲୋନୀ,*
*ପୋଃ ବଡ଼ପଡ଼ା, ଭାୟା–କୋଦଳା, ଜି: ଗଞ୍ଜାମ, (ଓଡ଼ିଶା) ।*

# ଗର୍ଭାବସ୍ଥାରେ ରକ୍ତହୀନତା

ଡା: ଶ୍ରୀମତୀ କଲ୍ୟାଣୀ ଦାଶ

ଭାରତବର୍ଷରେ ସାଧାରଣତଃ ସ୍ତ୍ରୀଲୋକମାନେ ଗର୍ଭାବସ୍ଥାରେ ବହୁଳଭାବରେ ରକ୍ତହୀନତା ଭୋଗିଥାନ୍ତି । ଅତୀତରେ ଏଥିଯୋଗୁଁ ବହୁସଂଖ୍ୟାରେ ଗର୍ଭବତୀ ମହିଳାଙ୍କର ମୃତ୍ୟୁ ଘଟୁଥିଲା । ମାତ୍ର ଆଜିକାଲି ଗାଁ ଗହଳରେ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର ଓ ମାତୃମଙ୍ଗଳକେନ୍ଦ୍ର ଖୋଲିଥିବାରୁ ସେଠାରେ ଗର୍ଭବତୀ ମହିଳାମାନଙ୍କର ନିୟମିତ ସ୍ୱାସ୍ଥ୍ୟ ପରୀକ୍ଷା କରାଯାଇ ଚିକିତ୍ସା ହେବା ଫଳରେ ଅବସ୍ଥାର ଯଥେଷ୍ଟ ଉନ୍ନତି ଘଟୁଥିବାର ଦେଖାଯାଉଛି ।

ଗର୍ଭାବସ୍ଥାରେ ଯେତେପ୍ରକାର ରକ୍ତହୀନତା ଦେଖାଯାଏ, ସେ ସବୁ ମଧ୍ୟରେ ଲୌହସାର (Iron) ଅଭାବରୁ ହେଉଥିବା ରକ୍ତହୀନତା ମୁଖ୍ୟ । ଗର୍ଭବତୀ ମହିଳାମାନଙ୍କର ଦୈନିକ ଏହି ଲୌହସାରର ଆବଶ୍ୟକତା ୧୦ରୁ ୧୫ ମି: ଗ୍ରା: ।୧୦୦ ମିଲିଲିଟର ରକ୍ତରେ ପ୍ରାୟ ୪୫ ମି: ଗ୍ରା: ଲୌହସାର ଥାଏ । ରକ୍ତରେ ଥିବା ହିମୋଗ୍ଲୋବିନ ଏକ ଗ୍ରାମ୍‌ରେ ୩-୫ ମି: ଗ୍ରା: ଲୌହସାର ଥାଏ । ଗର୍ଭାବସ୍ଥାରେ ଗର୍ଭସ୍ଥ ଶିଶୁର ଗଠନ ପାଇଁ ୩୦୦ରୁ ୪୫୦ ମି: ଗ୍ରା: ଲୌହସାର ଆବଶ୍ୟକ ହୁଏ । ତେଣୁ ଗର୍ଭବତୀ ମହିଳାମାନେ ଲୌହସାର ଓ ପୁଷ୍ଟିସାର ଅଭାବଜନିତ ରୋଗରେ ପଡ଼ିଥାନ୍ତି ।

ଆମ ଦେଶର ଅଧିକାଂଶ ଲୋକ ଗରିବ ଓ ସେମାନେ ଗାଁ ଗହଳରେ ବାସ କରନ୍ତି । ଦାରିଦ୍ର୍ୟ ଓ ଅଜ୍ଞତାର ଘେରରେ ରହି ସେମାନେ ଅନୁନ୍ନତ ଓ ଅସାମାଜିକ ପରିବେଶ ମଧ୍ୟରେ କାଳାତିପାତ କରନ୍ତି । ତେଣୁ "ଭଗବାନ ପିଲା ଦେଉଛନ୍ତି" ବୋଲି ଏହି ଗର୍ଭାବସ୍ଥାରେ ନାରୀର ଯେତିକି ଯତ୍ନ ଲୋଡ଼ା, ତାହା ମିଳିନଥାନ୍ତି । ପ୍ରଥମ ଗର୍ଭ ଅବସ୍ଥାରେ ନାରୀଠାରେ ଯେତିକି ରକ୍ତହୀନତା ହୋଇଥାଏ, ତା' ପରବର୍ତ୍ତୀ ଗର୍ଭମାନଙ୍କରେ ବାରମ୍ବାର ଅଳ୍ପ ଦିନ ବ୍ୟବଧାନରେ ଗର୍ଭଧାରଣ ହେଉଥିବାରୁ ଏହି ରକ୍ତହୀନତା ଅଧିକରୁ ଅଧିକ ବଢ଼ିଯାଏ । ତେଣୁ ପ୍ରସବ ସମୟରେ ଓ ତା'ପରେ ମହିଳାମାନେ ନାନା ପ୍ରକାର ଅସୁବିଧା (complication)ର ସମ୍ମୁଖୀନ ହୁଅନ୍ତି । ଉତ୍ତମ ସ୍ୱାସ୍ଥ୍ୟ ଓ ପୁଷ୍ଟିସାର ଖାଦ୍ୟର ଅଭାବ ଭିତରେ ସେମାନେ ବାରମ୍ବାର ଗର୍ଭଧାରଣ କରନ୍ତି । ତେଣୁ ଗର୍ଭସ୍ଥ ସନ୍ତାନର ବୃଦ୍ଧି ସଙ୍ଗେ ସଙ୍ଗେ ଏହି ରକ୍ତହୀନତା ବଢ଼ିଚାଲେ । ଗର୍ଭାବସ୍ଥାର ପ୍ରଥମ ସାତମାସରେ ରୋଗିଣୀ ଉପରେ ଏହା ଏତେ ପ୍ରଭାବ ପକାଇ ନଥାଏ । ମାତ୍ର ଶେଷ ତିନି ମାସରେ ରୋଗିଣୀ ଅତି ଅସୁସ୍ଥ ହୋଇପଡ଼େ । ଏହାର କାରଣ ଗର୍ଭସ୍ଥ ଶିଶୁ ପୂର୍ଣ୍ଣାଙ୍ଗ ହେଲାବେଳକୁ ତା'ର ଆବଶ୍ୟକତା ପୂରଣ ପାଇଁ ସେ ମା' ଶରୀରରୁହିଁ ଲୌହସାର ଟାଣି ନେଇଥାଏ ।

ଗର୍ଭାବସ୍ଥାରେ ଲୌହସାର ଅଭାବ ପାଇଁ ଆମଦେଶର ସାମାଜିକ ଅବସ୍ଥା ବହୁ ପରିମାଣରେ ଦାୟୀ । ଗାଁ ଗହଳରେ ବୋହୂଟିଏ ଚପଲ ପିନ୍ଧି ପଡ଼ିଆ ବାରିକୁ ଝାଡ଼ା ଯିବା ଦୋଷାବହ । ସେହିପରି ସମସ୍ତଙ୍କ ଘରେ ପାଇଖାନା ଦେଖିବା ମଧ୍ୟ ଦିବା ସ୍ୱପ୍ନ । ତେଣୁ ସ୍ତ୍ରୀଲୋକେ ଖାଲିପାଦରେ ପଡ଼ିଆକୁ ଝାଡ଼ାଗଲେ ପାଦବାଟେ ଅଙ୍କୁଶ କୃମି ବା Hook worm ଦ୍ୱାରା ଆକ୍ରାନ୍ତ ହୁଅନ୍ତି । ଏହି ଅଙ୍କୁଶ କୃମି ମା' ଶରୀରରୁ ରକ୍ତଶୋଷି ରକ୍ତହୀନତା ଜାତକରନ୍ତି । ଏହାଛଡ଼ା ମ୍ୟାଲେରିଆ ଜ୍ୱର, ଆମାଶୟ, ବଦହଜମି ଓ ଅର୍ଶ ଯୋଗୁଁ ରକ୍ତକ୍ଷୟ ଘଟି ରକ୍ତହୀନତା ଦେଖାଯାଏ ।

ରକ୍ତହୀନ ମହିଳାମାନେ ସାଧାରଣତଃ ଶେତା ଦେଖାଯାନ୍ତି ସେମାନଙ୍କର ହଜମ ଗୋଳମାଳ ହୁଏ, ଅଳ୍ପ ପରିଶ୍ରମ କଲେ ସେମାନେ ଅବଶ ହୋଇଯାନ୍ତି । ସିଡ଼ି ଚଢ଼ିଲେ, କିମ୍ବା କିଛିବାଟ ଚାଲିଲେ ଛାତି ଧଡ଼ପଡ଼ ହୁଏ ଓ ଧଇଁସଇଁ ଲାଗେ । କିଛିଦିନପରେ ପାଦଫୁଲେ, ମୁହଁ ଓ ପେଟ ଫୁଲିଯାଏ ଏବଂ ରକ୍ତଚାପ ବଢ଼ିଯାଇ ଅନ୍ୟାନ୍ୟ ଜଟିଳ ଉପସର୍ଗମାନ ଦେଖାଦିଏ । ଗର୍ଭାବସ୍ଥାରେ ରକ୍ତସ୍ରାବ ହୋଇ ନିର୍ଦ୍ଦିଷ୍ଟ ସମୟପୂର୍ବରୁ ଅପରିଣତ ଶିଶୁ ଜନ୍ମନିଏ । ବେଳେବେଳେ ହୃଦ୍‌ଯନ୍ତ୍ର କିମ୍ବା ଅବଶ ହୋଇ ହୃତ୍‌ପିଣ୍ଡର କାର୍ଯ୍ୟ ବନ୍ଦ ହୋଇଯାଏ । ପ୍ରସବ ସମୟରେ (collapse) ହୋଇ ରୋଗିଣୀ ମୃତ୍ୟୁବରଣ କରେ ପ୍ରସବ ପରେ ମଧ୍ୟ ରୋଗିଣୀ ବାରମ୍ବାର ଜ୍ୱର, ଝାଡ଼ା, ରକ୍ତସ୍ରାବ ହେବାଦ୍ୱାରା ଦୁର୍ବଳ ହୋଇପଡ଼େ । ଫଳତଃ ମାତୃଦୁଗ୍ଧର ପରିମାଣ ହ୍ରାସ ପାଇ ଶିଶୁ ଦୁର୍ବଳ ହୋଇଥାଏ ।

ରକ୍ତହୀନ ମାତାର ଗର୍ଭସ୍ଥଶିଶୁ ମାତ୍ରା ଅନୁଯାୟୀ ବଢ଼ି ପାରେ ନାହିଁ। ଏହି ଶିଶୁର ଆକାର ଓ ଓଜନ ସାଧାରଣ ସୁସ୍ଥ ଶିଶୁ ଅପେକ୍ଷା କମ୍ ହୁଏ। ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ପ୍ରସବ ହୋଇଯିବାରୁ ଶିଶୁଟି ଅପରିପକ୍ୱ ଓ କ୍ଷୁଦ୍ରକାୟ ହୁଏ। ବେଳେବେଳେ ଗର୍ଭରେ ହିଁ ଶିଶୁର ମୃତ୍ୟୁ ଘଟେ।

ଏହିସବୁ କାରଣରୁ ଗର୍ଭାବସ୍ଥା ପୂର୍ବରୁ ମହିଳାମାନଙ୍କୁ ଯଥେଷ୍ଟ ପୁଷ୍ଟିସାର ଓ ଲୌହସାର ଖାଦ୍ୟ ଖାଇବାକୁ ଦେବା ଉଚିତ। ଗର୍ଭବତୀ ମହିଳାମାନଙ୍କୁ ଉପଯୁକ୍ତ ଖାଦ୍ୟ, ବିଶେଷତଃ ସୁଷମ ଖାଦ୍ୟ, ଦେଲେ ପୁଷ୍ଟିସାର ଓ ଲୌହସାର ଅଭାବ ଦେଖାଯିବ ନାହିଁ। ମାଛ, ମାଂସ, ଛେନା, କ୍ଷୀର, ଚୂନାମାଛ, ଶାଗ, ଛତୁ, ସବୁଜ ପନିପରିବା, କଞ୍ଚା ଓ ପାଚିଲା କଦଳୀ, ପିଜୁଳି ଓ ପାଚିଲା ଅମୃତଭଣ୍ଡା ଖାଇବାକୁ ଦେଲେ ଗର୍ଭବତୀ ନାରୀଠାରେ ରକ୍ତହୀନତା ଦେଖାଦେବ ନାହିଁ। ଫଳତଃ ଗର୍ଭସ୍ଥ ଶିଶୁ ମଧ୍ୟ ସଠିକ ଭାବରେ ବଢ଼ିପାରିବ। ଏହାସତ୍ତ୍ୱେ ଯଦି ପ୍ରସବ ସମୟ ବେଳକୁ ବା ତା'ର ଅଳ୍ପଦିନ ପୂର୍ବରୁ ଗର୍ଭବତୀ ମହିଳାଠାରେ ରକ୍ତହୀନତାର ଲକ୍ଷଣ ଦେଖାଦିଏ, ତେବେ ତାକୁ ଲୌହସାର ଇଞ୍ଜେକ୍ସନ ବା ସ୍ଥଳବିଶେଷରେ ରକ୍ତଦିଆଯାଇପାରେ। ସ୍ରୀ ଗହଳରେ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର ଓ ମାତୃମଙ୍ଗଳ କେନ୍ଦ୍ରମାନଙ୍କରେ ଗର୍ଭବତୀ ମହିଳାଙ୍କର ରକ୍ତ ପରୀକ୍ଷା ହୋଇ ଲୌହସାର (Iron) ଓ Folic Acid) ଏକପ୍ରକାର 'ବି' ଭିଟାମିନ ବଟିକା ଏବଂ କ୍ୟାଲସିୟମ ବଟିକା ନିୟମିତ ଦିଆହେବାରୁ ସମ୍ପ୍ରତି ଏହି ରକ୍ତହୀନତାକୁ କେତେକ ପରିମାଣରେ ପ୍ରତିରୋଧ କରାଯାଇ ପାରୁଛି। ଏହାସତ୍ତ୍ୱେ ମଧ୍ୟ ଯଦି ଗର୍ଭାବସ୍ଥାରେ ପରିବାରର ଅନ୍ୟମାନେ ସେମାନଙ୍କ ଦେହର ଯତ୍ନ ପାଇଁ ସଚେତନ ନହୋଇ ସେମାନଙ୍କ ପ୍ରତି ଅମାନୁଷିକ ବ୍ୟବହାର ଦେଖାଇବେ ଓ ସେ ଅତ୍ୟଧିକ ପରିଶ୍ରମ କରାଇବେ, ତେବେ ଯେତେ ସ୍ୱାସ୍ଥ୍ୟ କେନ୍ଦ୍ର ଖୋଲି ଯତ୍ନ ନେଲେ ମଧ୍ୟ କିଛି ସୁଫଳ ମିଳିପାରିବ ନାହିଁ।

*ପ୍ରସୂତୀ ଓ ସ୍ତ୍ରୀରୋଗ ବିଶେଷଜ୍ଞା*
*ଓ.ଷ୍ଟୁ.ଏ.ଟି: ସ୍ୱାସ୍ଥ୍ୟ କେନ୍ଦ୍ର,*
*ଭୁବନେଶ୍ୱର-୩-ପୁରୀ।*




ରାୟଗଡ଼ା (କୋରାପୁଟ) ପୌର ପାଳିକାର ନଗରପାଳ ଶ୍ରୀ କୃଷ୍ଣଚନ୍ଦ୍ର ବହିପାତ୍ରଙ୍କ ସଭାପତିତ୍ୱରେ ଅନୁଷ୍ଠିତ ଉତ୍କଳ ପ୍ରସଙ୍ଗ ପାଠକ ସମାବେଶରେ ଉତ୍କଳ ପ୍ରସଙ୍ଗର ମୁଖ୍ୟ ସମ୍ପାଦକ ଶ୍ରୀ ସତୀଶ ପାତ୍ରଙ୍କ ଉଦ୍‌ବୋଧନ।

# ମୋ କବିତା

ଅରୁଣ କୁମାର ପଣ୍ଡା

[କବି ... ପାଣିଗ୍ରାହୀ ଶୋଇ ଥିଲେ ରୋଗ ଶଯ୍ୟାରେ । ଠିକ୍ ସେତିକି ବେଳେ ତାଙ୍କ ନିକଟରେ ପହଞ୍ଚିଲେ 'ସମାଜ'ର ସହ ସମ୍ପାଦିକା ମନୋରମା ମହାପାତ୍ର । ତାଙ୍କୁ ଲକ୍ଷ୍ୟ କରି ... ଗାଇ ଉଠିଲେ କବିଙ୍କର 'ଜୟପୁର ମାଟି' କବିତାର କେତୋଟି ପଙ୍‌କ୍ତି । ତାହା ଶୁଣି କବି ଆଖି ଖୋଲିଲେ ଓ ବେଶ୍ ଆନନ୍ଦ ମନରେ କହି ଉଠିଲେ –'ମୋ କବିତା' । ତାହା ହିଁ ଏହି କବିତାର ମୂଳପିଣ୍ଡ]

ଅସ୍ଥି-ପଞ୍ଜର ଦେହର ଆକାଶେ ମୃତ୍ୟୁ ବାଦଲ ଆସି
... ସ୍ୱପ୍ନର ତାରକା ମାନଙ୍କୁ,

... ଯେବେ ଗ୍ରାସ କରିବାକୁ
... ଅନ୍ଧାରେ ଯାଉଥିଲା ଯେବେ ଭାସି ॥

... ତା'ସଙ୍ଗେ ଜୁଝୁଥିଲା ଭିଡ଼ି, ତାହାରି ଫାଙ୍କରେ
... ଖେଳି
'ମାଟିର ମଣିଷ' କବି, ଭାଷା–ସାହିତ୍ୟ ରବି
'ସବୁଜ-ଯୁଗ'ର ସବୁଜ ବୃକ୍ଷ ସେ ସବୁଜ ତାହାର ଛବି ॥

ଠିକ୍ ସେତେବେଳେ ମନୋରମା ତାଙ୍କ ମନୋରମ
... ଖୋଲି
କବିତାର ସ୍ୱର ଶୁଣାଇଲେ ଖାଲି ପ୍ରଗଲ୍‌ଭା ଝରଣା ପରି
... ଥିଲେ ଯାହା 'ଜୟପୁର ବନ୍ଦେ'
... ଥିଲେ କବି କବିତାର ଛନ୍ଦେ
ଜୀବନ–ମରଣ ହିସାବ–ନିକାଶ କରିଥିଲେ ସେଠି ବସି
... କରିଥିଲେ ସମସ୍ତ କଥାକୁ, ହସ–ଖୁସି ପୁଣି
... ବ୍ୟଥାକୁ
କବିତା ରୂପରେ ଗାଇ ଦେବେ ହସି ହସି ॥

ମନୋରମା କଣ୍ଠୁ ଏତେକ କବିତା ଶୁଣି
... ନୟନରେ ବହିଲା ପୁଣି ଉଜାଣି
... ପାଇଁ ଭିଜିଗଲା ଦୁଇ ଖ,
ରୋଗ କଥା ଭୁଲି–
ମୁଖରେ ଫୁଟିଲା ଆନନ୍ଦ ଝଲକ

ମୁଗ୍ଧ ନୟନେ ଚାହିଁଲେ 'ହୃଦୟ–ଜିତା'
କଣ୍ଠରୁ ତାଙ୍କ ବାହାରି ଆସିଲା 'ମୋ କବିତା'
ମୋ କବିତା' ॥

ସୃଷ୍ଟି ପାଇଁ ସ୍ରଷ୍ଟାର କେଡ଼େ ବ୍ୟାକୁଳତା !
ତା'ପାଇଁ ମନରେ ବଢ଼େ କେତେ ଆତ୍ମୀୟତା !
ଯାହାକୁ ଗଢ଼ିଛି ଛାତିର ରକ୍ତରେ
ପାଳିଛି ଯାହାକୁ ଆଖିର ଲୁହରେ
ଯା' ପାଇଁ ଲାଞ୍ଛନା, ଯାତନା ସହିଛି, ତା'କୁ ସେ ପାରେ
କି ଭୁଲି ?
ସ୍ରଷ୍ଟା ବଞ୍ଚିଛି ଜଗତରେ ପରା ସୃଷ୍ଟି ପାଇଁତ ଖାଲି ॥

ଧନ୍ୟରେ କବି, ଧନ୍ୟ ତା'ର କବିତା
ମୃତ୍ୟୁ କାଳରେ କଲା ସିଏ ସହାୟତା
ଯନ୍ତ୍ରଣା ଦୁଃଖ ସବୁ ଶୋଷିନେଲା ।
ଶ୍ରାବଣ ଏ ଭାଇ ଫଗୁଣ ଆସିଲା
ବିଦାୟ ବେଳାରେ ସ୍ୱପ୍ନର ଜଣା ବୁଣି
ଲେଖିବା ବେଳରେ ହସି ଯେଉଁ ପରି
ମନ ନେଇ ଥିଲା କିଣି ॥

ଓଡ଼ିଶା ସ୍କୁଲ ଅଫ ମାଇନିଂ ଇଞ୍ଜିନିୟରିଂ,
କେନ୍ଦୁଝର–୭୫୮୦୦୧ ।

# ଧାନ, ଚିନାବାଦାମ ଫସଲ ପର୍ଯ୍ୟାୟ ଯତ୍ନ

ଦାମୋଦର ଲେଙ୍କା

ଧାନ ଓଡ଼ିଶାର ମୁଖ୍ୟ ଖାଦ୍ୟ ଫସଲ । ଓଡ଼ିଶାର ମୋଟ୍ ଚାଷ ଜମିର ୫.୩ ନିୟୁତ ହେକ୍ଟର ଜମିରେ ଧାନ ଚାଷ କରାଯାଏ । ଧାନ ପ୍ରାୟ ସବୁ କିସମ–ଢିପ, ମଝି ଓ ଖାଲ ଜମିରେ ଚାଷ କରାଯାଏ । ପ୍ରାୟ ୮୯୯ ହଜାର ହେକ୍ଟର ଢିପ ଜମି, ୧୬୬୫ ହଜାର ମଝିଆଳ ଓ ୧୫୭୪ ହେକ୍ଟର ଖାଲ ଜମିରେ ବର୍ଷାଋତୁରେ ଓ ୧୯୪ ହଜାର ହେକ୍ଟର ଜମିରେ ଡାଲୁଅ ଧାନ ଚାଷ କରାଯାଏ । କିନ୍ତୁ ଓଡ଼ିଶାରେ ଧାନ ଫସଲର ହାରାହାରି ଉତ୍ପାଦିକତା ହେକ୍ଟର ପ୍ରତି ମାତ୍ର ୧୯୦୦ କି.ଗ୍ରା: ଧାନ (୧୨୩୭ କି.ଗ୍ରା: ଚାଉଳ) । ପାଣି ପାଗର ପ୍ରଭାବ ହେତୁ ଏ ପରିମାଣ ବର୍ଷେ ବର୍ଷେ ବହୁତ ତଳକୁ ଖସିଯାଏ । ଓଡ଼ିଶାର ଚାହିଦା ମେଣ୍ଟାଇବା ପାଇଁ ନିହାତି କମରେ ୬.୨ ଟନ୍ ଧାନ ଉତ୍ପାଦନ ଆବଶ୍ୟକ ।

ପ୍ରତ୍ୟେକ ଫସଲ ପାଇଁ ଆବଶ୍ୟକ ପରିମାଣ ପୋଷକ ଆବଶ୍ୟକ । ଏହାର ଅଭାବ ହେଲେ ଗଛ ହୃଷ୍ଟପୁଷ୍ଟ ହୋଇ ବଢ଼ିପାରେ ନାହିଁ ଅମଳ କମିଯାଏ । ଏହା ବ୍ୟତୀତ ଠିକ୍ ସମୟରେ ହୋତ ଓ କମଣ ଆବଶ୍ୟକ । ଏହା ବିହୁନେ ଯେତେ ଖତ, ସାର ପାଣି ଦେଲେ ମଧ୍ୟ ଫସଲ ଆଶାଜନକ ଭାବେ ବଢ଼େ ନାହିଁ । ଏଣୁ ଉପଯୁକ୍ତ ଫସଲ ପାଇଁ ଠିକ୍ ସମୟରେ ହୋତ ଓ କମଣ ଏବଂ ଆବଶ୍ୟକ ପରିମାଣ ଖତ ଓ ସାର ଆବଶ୍ୟକ । ଧାନ ଫସଲ ଅମଳ ଅନୁସାରେ ବିଭିନ୍ନ ପରିମାଣର ଉପାଦାନ ଆବଶ୍ୟକ କରେ । ଗୋଟିଏ କ୍ୱିଣ୍ଟାଲ ଚାଉଳ ଉତ୍ପାଦନ ପାଇଁ ହାରାହାରି ୧.୫ କି.ଗ୍ରା: ଯବକ୍ଷାରଜାନ, ୦.୯୦୦ କି.ଗ୍ରା: ଫସଫୋରସ୍ ୨.୫ କି.ଗ୍ରା: ପୋଟାସ୍ ଆବଶ୍ୟକ । ଏହା ବ୍ୟତୀତ ଅଳ୍ପ ପରିମାଣର କାଲସିଅମ୍, ମାଗ୍ନେସିୟମ୍, ଲୌହ, ଦସ୍ତା, ତମ୍ବା ଓ ଅନ୍ୟାନ୍ୟ ଗୌଣ ଉପାଦାନ ଆବଶ୍ୟକ କରେ । ଯଥେଷ୍ଟ ପରିମାଣ ଖତ ପ୍ରୟୋଗ ହେତୁ ମାଧ୍ୟମିକ ଓ ଗୌଣ ଉପାଦାନଗୁଡ଼ିକ ମିଳି ଯାଉଥିବାରୁ ସେଗୁଡ଼ିକର ନ୍ୟୁନତା ଧାନ ଫସଲରେ ପରିଲକ୍ଷିତ ହୁଏ ନାହିଁ । ୧୯୬୫ ମସିହା ପରେ ଅଧିକ ଅମଳକ୍ଷମ ଧାନ ଚାଷ ପ୍ରସାର ଆରମ୍ଭ ହେଲା । ଏହି ଧାନ କିସମଗୁଡ଼ିକରୁ ଅଧିକ ଅମଳ ପାଇଁ କ୍ରମେ ଅଧିକ ସାର ପ୍ରୟୋଗ କରିବା ଆବଶ୍ୟକ ହେଲା । କେବଳ ଅଜୈବିକ ସାର ପ୍ରୟୋଗ ହେତୁ ଫସଲର ଅମଳ ବଢ଼ିଲା । କିନ୍ତୁ ତା ସାଥେ ସାଥେ ଦସ୍ତାଭଳି କେତେକ ଗୌଣ ଉପାଦାନର ନ୍ୟୁନତା ଅନେକ ଜାଗାରେ ଦେଖା ଦେଲାଣି । ଜୈବିକ ଖତ ଯଥେଷ୍ଟ ପରିମାଣରେ ପ୍ରୟୋଗ ହେଉ ନ ଥିବାରୁ ଏବଂ କେବଳ ଅଜୈବିକ ସାର ବିଶେଷତଃ ଯବକ୍ଷାରଜାନ ଜାତୀୟ ସାର ପ୍ରୟୋଗ ହେଉ ଥିବାରୁ ମୃତ୍ତିକାର ଗୋଟିକେ ଗୁଣ ନଷ୍ଟ ହେଉଛି ବୋଲି ଅନେକ ସମୟରେ ଅଭିଯୋଗ ଶୁଣିବାକୁ ମିଳୁଛି । ପ୍ରଥମେ ପ୍ରଥମେ ସାର ପ୍ରୟୋଗ ହେତୁ ଯେତିକି ଧାନ ଅମଳ ବୃଦ୍ଧି ପାଉଥିଲା ଏବେ ସେତିକି ହେଉନାହିଁ । ସେହି ପରିମାଣ ଅମଳ ବୃଦ୍ଧି ପାଇଁ କ୍ରମେ ବେଶୀ ଯବକ୍ଷାରଜାନ ଜାତୀୟ ସାର ବ୍ୟବହାର କରିବାକୁ ପଡୁଛି । ଏଣୁ ଯବକ୍ଷାରଜାନ ଜାତୀୟ ସାର ସହିତ ଉପଯୁକ୍ତ ପରିମାଣ ଖତ, ସୁପର ଓ ପୋଟାସ୍ ସାର ପ୍ରୟୋଗ କରିବା ଆବଶ୍ୟକ । ଉଭୟ ଜଳସେଚିତ ଓ ଅଣ ଜଳସେଚିତ ଅଞ୍ଚଳରେ ସାର ପ୍ରୟୋଗର ଆବଶ୍ୟକତା ରହିଛି ।

ଆମ ରାଜ୍ୟରେ ହେକ୍ଟର ପିଛା ସାର ପ୍ରୟୋଗ ପରିମାଣ ମାତ୍ର ୨୨ କି.ଗ୍ରା: । ଏଥିରୁ ଶତକଡ଼ା ୬୨ ଭାଗ ଯବକ୍ଷାରଜାନ, ୨୩ ଭାଗ ଫସ୍‌ଫୋରସ ଓ ମାତ୍ର ୧୫ ଭାଗ ପୋଟାସିୟମ । ଯବକ୍ଷାରଜାନ ପରିମାଣ ଅଧିକ ହେଲେ ଫସଲ ନରମା ହୋଇଯାଏ । ଏଥିରେ ବେଶୀ ରୋଗ ଓ ପୋକ ହୁଏ ଏବଂ ଧାନର ଓଜନ କମେ । ଏଣୁ ଅନୁପାତ ଅନୁସାରେ ଫସ୍‌ଫୋରସ ଓ ପୋଟାସିଅମ ପ୍ରୟୋଗ କରିବା ଆବଶ୍ୟକ । ନିମ୍ନରେ ବିଭିନ୍ନ ପ୍ରକାର ଧାନ ଜାତିପାଇଁ ଅନୁମୋଦିତ ସାର ପରିମାଣ ଦର୍ଶାଗଲା ।

ଅନୁମୋଦିତ ସାର ପରିମାଣ ହେକ୍ଟର ପ୍ରତି କି: ଗ୍ରା:–

| କ୍ର:ସ: | ଧାନଜାତି | ଯବକ୍ଷାରଜାନ | ଫସ୍‌ଫୋରସ୍ | ପୋଟାସ୍ |
|---|---|---|---|---|
| (୧) | ଛୋଟ ଧାନ<br>ଅଧିକ ଅମଳକ୍ଷମ (୧୨୦ ଦିନରୁ କମ୍)<br>ଧାଡ଼ିବୁଣା, ରୁଆ ଓ ଛଟା ବୁଣା । | ୬୦ | ୩୦ | ୩୦ |
| (୨) | ୧୨୦ ଦିନରୁ କମ୍<br>ଉନ୍ନତ କିସମ ଓ ଦେଶୀ ଧାନ<br>ଧାଡ଼ି ବୁଣା, ଛଟା ବୁଣା ଓ ରୁଆ । | ୪୦ | ୨୦ | ୨୦ |
| (୩) | (୧୨୦–୧୫୦ ଦିନିଆ ଧାନ<br>ଧାଡ଼ି ବୁଣା, ଛଟା ବୁଣା ଓ ରୁଆ)<br>ଅଧିକ ଅମଳକ୍ଷମ । | ୭୫ | ୩୭ | ୩୭ |
| (୪) | ୧୫୦ ଦିନରୁ କମ୍ ଦେଶୀ ଓ ଉନ୍ନତ ଧାନକୁ | | ୨୫ | ୨୫ |

ମୃତ୍ତିକାର ଉର୍ବରତା ଅନୁସାରେ ଏ ଉପାଦାନ ପ୍ରୟୋଗହାର ପରିବର୍ତ୍ତନ କରାଯାଇପାରେ । ଡାଳୁଅ ଋତୁରେ ଅଧିକ ଅମଳକ୍ଷମ ଧାନ ପାଇଁ ସାଧାରଣତଃ ୮୦–୪୦–୪୦ ଅନୁମୋଦନ କରାଯାଏ । ସୁବିଧା ଥିଲେ ମୃତ୍ତିକା ପରୀକ୍ଷା କରି ସାର ପ୍ରୟୋଗ କରିବା ଉଚିତ ।

ଉନ୍ନତି ଧାନ ହେକ୍ଟର ପିଛା ୨-୫ ଟନ୍, ଛୋଟ ସାରଦ ୩-୫ ଟନ୍ ଓ ବଡ଼ଧାନ ୪-୫ ଟନ୍ ଉତ୍ପାଦନ ପାଇବା ଭଳି ଜମିରେ ଖତ ଓ ସାର ପ୍ରୟୋଗ ଆବଶ୍ୟକ ।

## ଫସଲ ପରବର୍ତ୍ତୀ ଫସଲ :

ଧାନ କାଟିସାରି ସାଧାରଣତଃ ବିରି, କୋଳଥ, ମୁଗ, ଇତ୍ୟାଦି ଡାଲି ଜାତୀୟ ଫସଲ ଏବଂ ଶୋରିଷ, ଫେସୀ, ରାଶି ଆଦି ତୈଳବୀଜ ଜାତୀୟ ଫସଲ ଚାଷ କରାଯାଇଥାଏ । ନିପାଣିଆ ବିଲରେ ଅଧିକ ୨ଟି ଓ ସେଚିତ ଅଞ୍ଚଳରେ ୩ଟି ଫସଲ ସହଜରେ ମିଳିଥାଏ । ତୈଳବୀଜ ଫସଲମାନଙ୍କ ମଧ୍ୟରୁ କ୍ରମେ ଚିନାବାଦାମ ପ୍ରାଧାନ୍ୟ ଲାଭ କରୁଛି । ଏହାର ଚାଷ ଉଭୟ ସେଚିତ ଓ ବୃଷ୍ଟି ଅଞ୍ଚଳରେ ବଢ଼ି ଚାଲିଛି । ଏପରିକି ବିରି ଓ ମୁଗ ବଦଳରେ ଚିନାବାଦାମ ଚାଷ କରାଯାଉଛି । ୧୯୬୦ ମସିହାରେ ଆମ ରାଜ୍ୟରେ ମୋଟ ୨୪,୦୦୦ ହେକ୍ଟର ଜମିରେ ଚିନାବାଦାମ ଚାଷ ହେଉଥିଲା । ବର୍ତ୍ତମାନ ୩,୭୬,୦୦୦ ହେକ୍ଟର ଜମିରେ ଏହି ଫସଲ ଚାଷ ହେଉଛି । ଏହି ସମୟ ମଧ୍ୟରେ ହେକ୍ଟର ପ୍ରତି ଉତ୍ପାଦିତା ୮୦୫ କି:ଗ୍ରା:ରୁ ବୃଦ୍ଧି ପାଇ ୧୩୨୦ କି:ଗ୍ରା: ହୋଇ ପାରିଛି । ୧୯୮୯ରେ ଖରିଫ ଋତୁରେ ୨୦୩ ହଜାର ହେକ୍ଟର ଓ ରବି ଋତୁରେ ୧୭୩ ହଜାର ହେକ୍ଟର ଜମିରେ ଚାଷ ହେଉଛି । ଖରିଫ ଫସଲର ଅମଳ ହେକ୍ଟର ପିଛା ୧୧ କ୍ୱିଣ୍ଟାଲ ଏବଂ ରବି ଋତୁ ଫସଲର ଅମଳ ହେକ୍ଟର ପିଛା ୧୬–୧୭ କ୍ୱିଣ୍ଟାଲ । ଜଳସେଚନର ସୁବିଧା ଥିଲେ ଏ ଫସଲ ବର୍ଷସାରା ଚାଷ କରାଯାଇ ପାରିବ । ଚିନାବାଦାମ ଗୋଟିଏ ଛୁଇଁ ଜାତୀୟ ଫସଲ ହେଲେ ହେଁ ଏହା ମୁଖ୍ୟତଃ ତେଲ ପାଇଁ ଚାଷ କରାଯାଏ । ଏଥିରେ ପୁଷ୍ଟିସାର (ପ୍ରୋଟିନ୍) ପରିମାଣ ମଧ୍ୟ ବେଶୀ । ଏଣୁ ଏଥିରେ ଯବକ୍ଷାରଜାନ ସାର ପ୍ରୟୋଗ କରିବା ଆବଶ୍ୟକ । ଏଥିପାଇଁ ସାଧାରଣତଃ ହେକ୍ଟର ପିଛା ୨୦ କି:ଗ୍ରା: ଯବକ୍ଷାରଜାନ ପ୍ରୟୋଗ ଅନୁମୋଦନ କରାଯାଉଛି ।

ଚିନାବାଦାମ ପାଇଁ ଫସ୍‌ଫୋରସ୍ ଅତି ଆବଶ୍ୟକ । ହେକ୍ଟର ପିଛା ୪୦–୬୦ କି:ଗ୍ରା: ଫସ୍‌ଫେଟ୍ ଦେଲେ, ଅମଳ ଆଶାନୁରୂପେ ବଢ଼ିଥାଏ । ଫସ୍‌ଫେଟ୍ ସାର ପ୍ରୟୋଗ କଲେ ଚେର ସଂଖ୍ୟା ବଢ଼େ । ଚେରରେ ବେଶୀ ଭାତୁଡ଼ି ହୁଏ, ଭାତୁଡ଼ି ବହୁତ ଦିନ ରହେ ଏବଂ ବେଶୀ ଯବକ୍ଷାରଜାନ ସ୍ଥିରକରି ଗଛକୁ ଯୋଗାଏ, ବାଦାମ ସଂଖ୍ୟା ଓ ଓଜନ ବଢ଼େ । ବାଦାମ ଫମ୍ପା ହୁଏ ନାହିଁ । ତେଲଭାଗ ମଧ୍ୟ ବଢ଼େ । ଫସଫୋରସ୍ ଓ ଗନ୍ଧକ ପ୍ରୟୋଗ ହେତୁ ଯବକ୍ଷାରଜାନ ଶୋଷଣ ଓ ବ୍ୟବହାର ବୃଦ୍ଧି ପାଇଥାଏ ।

ଆମ ଜମି ଅମ୍ଳୀ । ଏଥିରେ ସହଜରେ ଫସ୍‌ଫେଟ୍ ଗଛକୁ ମିଳେ ନାହିଁ । ଏଣୁ ଆବଶ୍ୟକ ମତେ ଚୂନ ବା ଚୂନ ଜାତୀୟ ପଦାର୍ଥ ପ୍ରୟୋଗ କରିବା ଆବଶ୍ୟକ । ଚିନାବାଦାମ ଫସଲରେ ଫୁଲରୁ ଓହଳ ବାହାରି ମାଟିଭିତରେ ପଶିବା ସମୟରେ ବେଶୀ କାଲସିଅମ ଦରକାର କରେ । ଏହି ସମୟରେ ମୃତ୍ତିକାରେ ହେକ୍ଟର ପିଛା ୪୦ କି:ଗ୍ରା:ରୁ କମ୍ କାଲ୍‌ସିଅମ ରହିଲେ ଫଳର ସଂଖ୍ୟା ଓ ଆକାର ଓ ଓଜନ ହ୍ରାସ ପାଇଥାଏ । ଏହିସମୟରେ ଉପଯୁକ୍ତ ପରିମାଣର ଜଳୀୟ ଅଂଶ ରହିଲେ କାଲ୍‌ସିଅମ ଲଭ୍ୟତା ବୃଦ୍ଧି ପାଇଥାଏ । ଚୂନ କିମ୍ବା ଜିପ୍‌ସମ୍ ପ୍ରୟୋଗ ଦ୍ୱାରା ଫସଲର କାଲ୍‌ସିଅମ ଆବଶ୍ୟକତା ପୂରଣ କରାଯାଇଥାଏ । ସୁପର ଫସ୍‌ଫେଟରେ ଫସ୍‌ଫୋରସ୍, କାଲ୍‌ସିଅମ ଓ ଗନ୍ଧକ ଥାଏ । ଜିପ୍‌ସମ୍‌ରେ କାଲ୍‌ସିଅମ ଓ ଗନ୍ଧକ ଥାଏ । ଉପଯୁକ୍ତ ପରିମାଣର ଖତ ଓ ସୁପର ସାର ପ୍ରୟୋଗ କଲେ ଚୂନ ବା ଜିପ୍‌ସମର ଆବଶ୍ୟକତା ରହିବ ନାହିଁ । କିନ୍ତୁ ମାଟି ବେଶୀ ଅମ୍ଳୀ ହେଲେ ୨ ବର୍ଷରେ ଥରେ ଥରେ ଚୂନ ପ୍ରୟୋଗ କରିବା ଆବଶ୍ୟକ ହୋଇପାରେ । ଏଣୁ ହେକ୍ଟର ପିଛା ୪୦–୬୦ କି:ଗ୍ରା: ଫସ୍‌ଫେଟ୍, ୧୦ କି:ଗ୍ରା: ଗନ୍ଧକ ଓ ୨ ଟନ୍ ଚୂନ ପ୍ରୟୋଗ କରିବା ଆବଶ୍ୟକ । ଏକ କ୍ୱିଣ୍ଟାଲ ଚିନା ବାଦାମ ମାଟିରୁ ୩ କି:ଗ୍ରା: ଯବକ୍ଷାରଜାନ, ୦·୬୮ କି:ଗ୍ରା: ଫସ୍‌ଫେଟ୍, ୧·୦୩ କି:ଗ୍ରା: ପୋଟାସ୍ ଓ ୦·୧୩୫ କି:ଗ୍ରା: କାଲ୍‌ସିଅମ ଗ୍ରହଣ କରିଥାଏ । ଏକ କ୍ୱିଣ୍ଟାଲ ଲଟାରେ ୧·୯୬ କି:ଗ୍ରା: ଯବକ୍ଷାରଜାନ, ୦·୨୬ କି:ଗ୍ରା: ଫସ୍‌ଫେଟ୍ ୨·୦୫ କି:ଗ୍ରା: ପୋଟାସ୍ ଓ ୦·୯୩ କି:ଗ୍ରା: କାଲ୍‌ସିଅମ । ଏକ କ୍ୱିଣ୍ଟାଲ ଚିନାବାଦାମ ପାଇଁ ୨ କ୍ୱିଣ୍ଟାଲ ଲଟା ଉତ୍ପାଦିତ ହୋଇଥାଏ । ଏଣୁ ୧୦ କ୍ୱିଣ୍ଟାଲ ଚିନାବାଦାମ ଅମଳରେ ୨୦ କ୍ୱିଣ୍ଟାଲ ଲଟା ବାହାରେ । ଏଥିରେ ମୋଟ ୭୦ କି:ଗ୍ରା: ଯବକ୍ଷାରଜାନ, ୧୦ କି:ଗ୍ରା: ଫସ୍‌ଫେଟ୍ । ୫୧ କି:ଗ୍ରା: ପୋଟାସ୍ ଓ ୨୧ କି:ଗ୍ରା: କାଲ୍‌ସିଅମ ଫସଲ ମାଟିରୁ ନେଇଥାଏ । ଏଣୁ ଏ ଫସଲକୁ ଉପଯୁକ୍ତ ପରିମାଣରେ ଖତସାର ନ ଦେଲେ ମାଟିର ଉର୍ବରତା କ୍ରମେ ହ୍ରାସ ପାଏ ଏବଂ ଫସଲର ଅମଳ କମେ ।

ଧାନ କାଟିସାରି ଉଭୟେ ଜଳସେଚିତ ଅଞ୍ଚଳରେ ଚିନାବାଦାମ ଚାଷ କରାଯାଉଛି । ଏଣୁ ଏହି ଦୁଇ ଫସଲକୁ ଉପଯୁକ୍ତ ପରିମାଣରେ ଖତସାର ଦେବା ଆବଶ୍ୟକ । ଫସ୍‌ଫେଟ୍ ପ୍ରୟୋଗ କଲେ ଯବକ୍ଷାରଜାନ ସ୍ଥିରିକରଣ ପରିମାଣ ବୃଦ୍ଧି ପାଇଥାଏ । ୨୦ କି:ଗ୍ରା: ଫସ୍‌ଫେଟ୍ ପ୍ରୟୋଗ ହେତୁ ମୃତ୍ତିକାରେ ୬୨ କି:ଗ୍ରା: ଯବକ୍ଷାରଜାନ ଲାଭ ହୋଇଥାଏ । ମୋଟେ ସାର ନଦେଲେ ଅନ୍ୟୂନ ୫୦ କି:ଗ୍ରା: ଯବକ୍ଷାରଜାନ ମାଟିରୁ କ୍ଷୟ ହୋଇଥାନ୍ତା । ସାର ପ୍ରୟୋଗ ହେତୁ ଚିନାବାଦାମ ଫସଲର ଅମଳ ବୃଦ୍ଧି ନିମ୍ନରେ ଦିଆଗଲା (ସାରଣୀ–୧) ।

## ସାରଣୀ ୧—ବିଭିନ୍ନ ଉପସ୍ତର ହେତୁ ଚିନାବାଦାମ ଅମଳ ବୃଦ୍ଧି :

| କ୍ର.ସଂ. | ଉପସ୍ତର | ଅମଳ ହେକ୍ଟର ପ୍ରତି କ୍ୱିଣ୍ଟାଲ | ମନ୍ତବ୍ୟ |
|---|---|---|---|
| (୧) | ୧୦ କି.ଗ୍ରା: ଯବକ୍ଷାରଜାନ+୨୦ କି.ଗ୍ରା:ଫସ୍‌ଫେଟ୍+୨୦ କି.ଗ୍ରା: ପୋଟାସ୍ (୧୦:୨୦:୨୦) | | ଏଥିରୁ ଜଣାଯାଏ ଯେ ସାର ପ୍ରୟୋଗ ହେତୁ ଅମଳ ବଢୁଛି। ଜିପସମ କ୍ରିୟା କକ୍ଷରେ ପ୍ରୟୋଗ କଲେ ମଧ୍ୟ ଅମଳ ବଢୁଛି। |
| (୨) | ୨୦ କି.ଗ୍ରା: ଯବକ୍ଷାରଜାନ+୪୦ କି.ଗ୍ରା: ଫସ୍‌ଫେଟ୍+୪୦ କି.ଗ୍ରା: ପୋଟାସ୍ (୨୦:୪୦:୪୦) | ୧୯.୬୮ | |
| (୩) | ମୃତ୍ତିକା ପରୀକ୍ଷା ଅନୁସାରେ ୨୫:୫୦:୫୦+୨୫୦ କି.ଗ୍ରା: | ୨୬.୮୮ | |
| (୪) | ଜିପସମ୍ ୨୦:୪୦:୪୦+ | ୨୫.୯୯ | |
| (୫) | ରାଇଜୋବିୟମ କଲଚର୍ ବିନା ସାର ପ୍ରୟୋଗ। | ୧୯.୮୮ | |

ଖରିଫ୍ ଋତୁରେ ଅନ୍ୟୁନ ୪ ଟନ୍ ଧାନ ଓ ରବିରେ ୯ କ୍ୱି... ଚିନାବାଦାମ ପାଇବା ପାଇଁ ଲକ୍ଷ୍ୟ ସ୍ଥିରକରି ଖତ ଓ ସାର ପ୍ରୟୋ... କରିବା ଓ ଉପଯୁକ୍ତ କମଣ ପାଇଁ ବ୍ୟବସ୍ଥା କରିବା ଆବଶ୍ୟ... ଏଥିରୁ ହେକ୍ଟର ପିଛା ୨୭,୦୦୦ ଟଙ୍କା ଆଦାୟ ମିଳିବ।

କୃଷି କଲେଜ, ଭୁବନେଶ୍ୱର।




ଭବାନୀପାଟଣାଠାରେ ଉତ୍କଳ ଦିବସ ଉପଲକ୍ଷେ ଆୟୋଜିତ ଏକ ଉତ୍ସବରେ ଜିଲ୍ଲାପାଳ ଶ୍ରୀ ଅଶୋକ ଦଲଓ୍ୱାଇ ଓ ନାଟ୍ୟରଶ୍ମୀ ଶ୍ରୀ ପ୍ରଫୁଲ୍ଲ କୁମାର ରଥ, ରାଷ୍ଟ୍ରମନ୍ତ୍ରୀ ଶ୍ରୀ କିରଣ ଚନ୍ଦ୍ର ସିଂହଦେଓଙ୍କୁ ସାକ୍ଷର ମାଳା ଅର୍ପଣ କରୁଛନ୍ତି।

# ଭାଷା ଭାବନା ଓ ଜାତୀୟ ସଂହତି

—ଅଧ୍ୟାପକ ବୃନ୍ଦାବନ ଚନ୍ଦ୍ର ମିଶ୍ର

ଭାରତ ବର୍ଷ ଏକ ବହୁ ଭାଷାଭାଷୀ ଦେଶ । ଏଠାରେ ଅନ୍ତତଃ ୧୫ ଗୋଟି ଭାଷାର ପ୍ରଚଳନ ଦେଖାଯାଏ । ଭାବ ଆଦାନ ପ୍ରଦାନରେ ଭାଷାର ସହାୟତା ଅନସ୍ୱୀକାର୍ଯ୍ୟ । ଭାଷା ମଣିଷକୁ ପରିମାର୍ଜିତ କରେ । ପୋଷାକ ଯେମିତି ମଣିଷର ସୌନ୍ଦର୍ଯ୍ୟ ବର୍ଦ୍ଧନ କରେ, ଭାଷା ଠିକ୍ ସେହିପରି ଗୋଟିଏ ଜାତିକୁ ଶ୍ରେଷ୍ଠ କରି ଗଢ଼ିତୋଳେ । ଉଚ୍ଚକୋଟୀର ସାହିତ୍ୟ ମାଧ୍ୟମରେ ହିଁ ଭାଷାର ଉନ୍ନତି ଘଟେ । ଏସବୁକୁ ବିଶ୍ଳେଷଣ କଲେ ଜଣାଯାଏ ଯେ ଭାଷା ମଣିଷର ଏକ ସର୍ବଶ୍ରେଷ୍ଠ ସମ୍ପଦ । ଭାଷାର ଆବିଷ୍କାର ମଣିଷର ଏକ ଅନବଦ୍ୟ କୃତି । ଭାଷା ମାଧ୍ୟମରେ ମଣିଷ ନିଜ ହୃଦୟର ଉଚ୍ଛ୍ୱାସ, ଭାବରାଶିକୁ ସହଜ ଓ ସ୍ୱଚ୍ଛନ୍ଦରେ ବ୍ୟକ୍ତ କରିପାରେ । ଏହି ଅର୍ଥରେ ଭାଷା ଭାବ ବିନିମୟର ଶ୍ରେଷ୍ଠ ମାଧ୍ୟମ । କଥାରେ ଅଛି, ଯେଉଁ ଜାତିର ଭାଷା ଯେତିକି ଉନ୍ନତ ସେ ଜାତି ସେତିକି ସମୃଦ୍ଧ । ଉନ୍ନତ ଜାତିର ଭାଷା ମଧ୍ୟ ଉନ୍ନତ । ଭାଷା ସମଭାଷୀ ଲୋକମାନଙ୍କୁ ସଙ୍ଘବଦ୍ଧ କରିଥାଏ । ଏହା ଗୋଟିଏ ଜାତିର ସଂସ୍କୃତି, ଐତିହ୍ୟ ଓ ପରମ୍ପରାର ବାହକ । ଭାଷା ଗୋଟିଏ ଜାତିର ପ୍ରାଣପିଣ୍ଡ କହିଲେ ଅତ୍ୟୁକ୍ତି ହେବନାହିଁ । ଅତଏବ ଭାଷା ଓ ଜାତିର ସମ୍ପର୍କ—କାୟା ଛାୟାର ସମ୍ପର୍କ ଭଳି । ଉଭୟେ ଓତଃପ୍ରୋତଃ ଭାବେ ଜଡ଼ିତ । ଭାଷାରୁ ଇତିହାସ ଓ ସାହିତ୍ୟ ସୃଷ୍ଟି । ଇତିହାସ ବ୍ୟକ୍ତିକୁ ଅତୀତର କାର୍ଯ୍ୟାବଳୀ ସମ୍ପର୍କରେ ସମନ୍ୱିତ ଓ କାଳକ୍ରମିକ ବିବରଣୀ ପ୍ରଦାନ କରେ । ଅପର ପକ୍ଷରେ, ସାହିତ୍ୟ ସମାଜର ଅନ୍ତର୍ନିହିତ ଚେତନାକୁ ପ୍ରକାଶ କରେ । ଅବଚେତନ ମନର ରହସ୍ୟକୁ ସାହିତ୍ୟ ଉଦ୍‌ଘାଟନ କରେ । ମଣିଷ ଜୀବନକୁ ସାହିତ୍ୟ କରେ କାନ୍ତକୋମଳ ଓ ରମଣୀୟ । କୁତ୍ସିତ କଦାକାର ବସ୍ତୁ ମଧ୍ୟରେ ସାହିତ୍ୟ ଖୋଜେ ଶାଶ୍ୱତ ସୌନ୍ଦର୍ଯ୍ୟ । ହେୟ ବସ୍ତୁରେ ମଧ୍ୟ ଦେଖାଇଦିଏ ଜଗତର ଶ୍ରେୟ । ଭାଷା ଏ ଦୁଇଟିକୁ (ଇତିହାସ ଓ ସାହିତ୍ୟକୁ) ପରିପୁଷ୍ଟ କରିଥାଏ । ଏଣୁ ଉନ୍ନତ ସାହିତ୍ୟ ଉତ୍କୃଷ୍ଟ ଭାଷା ଉପରେ ନିର୍ଭର କରେ । ସ୍ୱତଃ ପ୍ରତ୍ୟେକ ବ୍ୟକ୍ତି ମନରେ ତା'ର ମାତୃଭାଷା ଓ ମାତୃଭୂମି ପ୍ରତି ଶ୍ରଦ୍ଧା ଜନ୍ମେ । ଯଥାର୍ଥରେ ମଧୁସୂଦନ କହିଛନ୍ତି—

"ମାତୃଭୂମି ମାତୃଭାଷା ଉଭୟେ ଜନନୀ
ସେବ ତାଙ୍କୁ ଭକ୍ତିଭରେ ଦିବସ ରଜନୀ ।"

ଭାଷାକୁ ଭିତ୍ତିକରି ଏକ ଜାତି ଗଢ଼ିଉଠେ । ଠିକ୍ ସେହିଭଳି ଭାଷା ଭିତ୍ତିରେ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଜନ୍ମ ନେଲା ୧୯୩୬ ମସିହା ଅପ୍ରେଲ ୧ ରେ । ଏଥିପାଇଁ ମଧୁସୂଦନ, ଗୋପବନ୍ଧୁ ଓ ଗୋଦାବରୀଶଙ୍କର ଅବଦାନ ଅବିସ୍ମରଣୀୟ । ସେମାନଙ୍କ ନେତୃତ୍ୱ ଅଗ୍ରଗଣ୍ୟ । ତଥାପି ଉତ୍କଳର କେତେକାଂଶ ଓଡ଼ିଶା ପ୍ରଦେଶର ବାହାରେ ଅଦ୍ୟାବଧି ରହିଛି । (ଯଥା—ଖରସୁଆଁ, ସରେଇକଳା) ।

ସାମାଜିକ ତଥା ବିଶ୍ୱ ବିଦ୍ୟାଳୟ କ୍ଷେତ୍ରରେ ଓଡ଼ିଆ ଭାଷା ଶିକ୍ଷାର ମାଧ୍ୟମ ଭାବରେ କେତେକାଂଶରେ ବ୍ୟବହୃତ ହୋଇଥିଲେ ମଧ୍ୟ ଇଂରାଜୀ ଭାଷା ସରକାରୀ ସ୍ତରରେ ବ୍ୟବହୃତ ହେଉଥିଲା । ୧୯୮୫ ମସିହା ଏପ୍ରିଲ୍ ୧ ରୁ ଓଡ଼ିଶା ସରକାରଙ୍କ ନିର୍ଦ୍ଦେଶକ୍ରମେ ଓଡ଼ିଆ ଭାଷାକୁ ସରକାରୀ ଭାଷା ରୂପେ ଗ୍ରହଣ କରାଗଲା । ଏହା ସ୍ୱାଗତଯୋଗ୍ୟ ।

ଭାଷାକୁ କେନ୍ଦ୍ର କରି ଅନେକ ବାଦାନୁବାଦ ଲେଖା ଓ ମତବାଦ ପୂର୍ବରୁ ପ୍ରକାଶ ପାଇଛି । ଏହାର ସମାଧାନ ସ୍ୱରୂପ ଜନ୍ମନେଲା ତ୍ରିଭାଷୀ ସୂତ୍ର (Three language formula) । ଏହି ସୂତ୍ରରେ ତିନୋଟି ଭାଷାର ସମନ୍ୱୟ ସ୍ଥାପନ କରାଯାଇଛି ।ଆନ୍ତର୍ଜାତିକ ଭାଷା ରୂପେ ଇଂରାଜୀ, ଜାତୀୟ ଭାଷା ରୂପେ ହିନ୍ଦୀ ଓ ମାତୃଭାଷା ରୂପେ ପ୍ରାଦେଶିକ ବା ଆଞ୍ଚଳିକ ଭାଷାକୁ ପରିସରଭୁକ୍ତ କରାଯାଇଛି । ଏହିପରି ଏ ତ୍ରିଭାଷୀ ସୂତ୍ର ସର୍ବଶ୍ରେଷ୍ଠ ପନ୍ଥା ରୂପେ ସମସ୍ତଙ୍କର ସ୍ୱୀକୃତି ଲାଭ କରିଛି । ଉପରୋକ୍ତ ତିନୋଟି ଭାଷାରୁ କୌଣସି ଗୋଟିଏ ଭାଷାକୁ ଆମେ ଜଳାଞ୍ଜଳି ଦେଇ ପାରିବାନାହିଁ । ଜାତୀୟ ସଂହତି ଦୃଷ୍ଟିରୁ ଚିନ୍ତା କଲେ ଏ ତ୍ରିଭାଷୀ ସୂତ୍ରର ଗୁରୁତ୍ୱ ଅତ୍ୟନ୍ତ ବ୍ୟାପକ ।

ଆଜିକାଲି କେତେକ ରାଜ୍ୟ ପ୍ରାଦେଶିକ ଭାଷାକୁ ବିଭିନ୍ନ କ୍ଷେତ୍ରରେ ଶିକ୍ଷା, ସରକାରୀ କାର୍ଯ୍ୟାଳୟରେ ଅଧିକ ଗୁରୁତ୍ୱ ଆରୋପ କରୁଛନ୍ତି । ଫଳତଃ, ଇଂରାଜୀ ଓ ହିନ୍ଦୀ ଭାଷାର

ଆପେକ୍ଷିକ ଗୁରୁତ୍ୱ କମିଯାଉଛି ଏବଂ ଆଞ୍ଚଳିକ ଓ ଜାତିଆଣ ମନୋଭାବ ଦେଖାଦେଉଛି । ଆଉ କେତେକ ସେମାନଙ୍କର ଯୁକ୍ତି ଦର୍ଶାଇ କହନ୍ତି ଯେ, ଇଂରାଜୀ ଏକ ସାମନ୍ତ ଭାଷା । ଇଂରାଜୀ ଭାଷାର କଥନ ବୃଥା ଅହମିକାର ପରିଚାୟକ । ଏହାର କଥନରେ ମାତୃଭାଷାର ଜ୍ଞାନ କ୍ଷୁଣ୍ଣ ହୁଏ । ପିଲାଟିଏ କିଛି ନବୁଝି କେବଳ ଶୁଆ ଭଳି ମୁଖସ୍ଥ କରି ପାଠକୁ ମନେରଖେ । ଫଳରେ "ଯାହା ଶିଖାଇଛି କଟାଧାରୀରେ କରାଣୀ"ର ଅନୁରୂପ ଅବତାରଣା ତା'ଠି ଘଟେ । ଜ୍ଞାନର ପରିସୀମା ସିନା ବୃଦ୍ଧି ହୁଏ ହେଲେ ବୁଝିବା ଶକ୍ତିର ନୁହେଁ । ପୃଥିବୀର ପ୍ରଚଳିତ ଭାଷାମାନଙ୍କ ମଧ୍ୟରେ ଇଂରାଜୀ ଭାଷା ଅତ୍ୟନ୍ତ ସମୃଦ୍ଧ । ବୈଜ୍ଞାନିକ, ବୈଷୟିକ, ଡାକ୍ତରୀ, କାରିଗରୀ, ମହାକାଶ ବିଜ୍ଞାନ ଏବଂ ଅନ୍ୟାନ୍ୟ କ୍ଷେତ୍ରରେ ଇଂରାଜୀ ଭାଷା ପ୍ରୟୋଗର ପରିସର ଅତ୍ୟନ୍ତ ବ୍ୟାପକ । ଏହା ଆନ୍ତର୍ଜାତିକ ଜ୍ଞାନ ବିଜ୍ଞାନର ଦ୍ୱାର ଦେଶ ଏବଂ ଦେଶ ଦେଶ ମଧ୍ୟରେ ସାଂସ୍କୃତିକ ଭାବ ବିନିମୟର ମାଧ୍ୟମ । ଗର୍ବର କଥା ଆଜି ଓଡ଼ିଆ ଯୁବକମାନେ ବିଦେଶରେ ବିଭିନ୍ନ କ୍ଷେତ୍ରରେ ଖୁବ୍ ଖ୍ୟାତି ଅର୍ଜନ କରି ପାରିଛନ୍ତି । ଉଭୟ ଓଡ଼ିଆ ଓ ଇଂରାଜୀ ଭାଷାରେ ସେମାନଙ୍କର ଅବଦାନର ସ୍ପଷ୍ଟ ଚିହ୍ନ ମିଳେ । ଏହା ବ୍ୟତୀତ ସର୍ବଭାରତୀୟ ପରୀକ୍ଷାଗୁଡ଼ିକରେ ଓଡ଼ିଆ ଯୁବକମାନଙ୍କର ସଫଳ କୃତିତ୍ୱରୁ ଇଂରାଜୀ ଭାଷାର ସହାୟତା ସହଜରେ ଅନୁମେୟ ।

ଅତୀତକୁ ଅନୁଧ୍ୟାନ କଲେ ଏହା ସ୍ପଷ୍ଟ ଯେ ଆମେ ବିଭିନ୍ନ କ୍ଷେତ୍ରରେ ଆଗେଇଛୁ । ଆଧୁନିକତା ସହ ତାଳ ଦେଇ ଆମେ କୃଷି, ବାଣିଜ୍ୟ, ଶିକ୍ଷା, ପ୍ରଭୃତି କ୍ଷେତ୍ରରେ ଅନ୍ୟ ରାଜ୍ୟମାନଙ୍କ ସହ ସମକକ୍ଷ ହେବା ଆବଶ୍ୟକ । ଜାତୀୟ ଓ ଆନ୍ତର୍ଜାତୀୟ ଚିନ୍ତାଧାରାରେ ଉଦ୍‌ବୁଦ୍ଧ ହୋଇ ପାରିଲେ ପ୍ରକୃତ ଜ୍ଞାନାର୍ଜନ ହେବ ଓ ଜାତିର ଉନ୍ନତି ହେବ । ଓଡ଼ିଆ ଭାଷାର ଉନ୍ନତି ପାଇଁ ଅନ୍ୟ ଭାଷାର ଜ୍ଞାନ ଅପରିହାର୍ଯ୍ୟ । ତେଣୁ ମାତୃଭାଷା ସଙ୍ଗେ ସଙ୍ଗେ ଇଂରାଜୀ ଭାଷାକୁ ମଧ୍ୟ ଗୁରୁତ୍ୱ ଦେବା ଉଚିତ । ଉଭୟେ ପରିପୂରକ । କେତେଜଣଙ୍କର ଧାରଣା ଯେ ଇଂରାଜୀ କହିଲେ ନିଜକୁ ପ୍ରତିଷ୍ଠିତ କରିହେବ । ସମ୍ମାନ ବଢ଼ିବ । ତେଣୁ ସେମାନେ ଭୁଲ୍ ଇଂରାଜୀ କହନ୍ତି । ମାତୃଭାଷାକୁ ଉନ୍ନତ କରିନାହିଁ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ବ୍ୟକ୍ତି ଯେଉଁ ଭାଷାରେ ପାରଦର୍ଶିତା ଲାଭ କରିଥାନ୍ତି ସେ ସେହି ଭାଷାରେ ଭାବ ପ୍ରକାଶ କଲେ କ୍ଷତି କ'ଣ ହୁଅନ୍ତା ?

ଆଜି ଜ୍ଞାନର ପରିସର ବ୍ୟାପ୍ତ । ତେଣୁ ଏ ଓଡ଼ିଆ କେବଳ ଓଡ଼ିଶାର କ୍ଷୁଦ୍ର ପରିସର ମଧ୍ୟରେ ସୀମିତ ହେବା ଉଚିତ୍ ନୁହେଁ । ଏମିତିରେ 'କୂପ ମଣ୍ଡୂକତା'ର ପରିଚୟ ମିଳିବ । ଆଜି ଓଡ଼ିଆ ଯୁବକମାନେ କେବଳ ଓଡ଼ିଶାରେ ସୀମାବଦ୍ଧ ନୁହନ୍ତି, ପୃଥିବୀର ପ୍ରତିକୋଣରେ ଓଡ଼ିଆମାନଙ୍କର ପାଦଚିହ୍ନ ପଡ଼ିଛି । ସେ ତାଙ୍କ ଓଡ଼ିଆମିର ପରାକାଷ୍ଠା ଦେଖାଇବା ପାଇଁ ଯତ୍ନଶୀଳ । ସେଇ ସାହିତ୍ୟ, ସଂସ୍କୃତି, କଳା ଉତ୍କଳୀୟତାକୁ ନେଇ ବଞ୍ଚିଛି ତାକୁ ସମଗ୍ର ବିଶ୍ୱ ଜାଣିବା ଉଚିତ୍ ।

---

*ଅଧ୍ୟାପକ, ଶିକ୍ଷା ବିଭାଗ,*
*ଗଙ୍ଗାଧର ମେହେର ମହାବିଦ୍ୟାଳୟ,*
*ସମ୍ବଲପୁର ।*



ସଚିବାଳୟଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଆଦିବାସୀ ଉପଦେଷ୍ଟା ପରିଷଦ ବୈଠକରେ ଉଦ୍‌ବୋଧନ ଦେଉଛନ୍ତି ।

# ଓଡ଼ିଶାରେ ପ୍ରଥମ ବେତାର କେନ୍ଦ୍ର ଓ ତା'ର କାର୍ଯ୍ୟକ୍ରମ

କିଶୋର ମହାନ୍ତି

ଆକାଶ ବାଣୀ, କଟକ

ସମୟ ସନ୍ଧ୍ୟା ୬ଟା ବାଜି ୩୦ ମିନିଟ୍ ।

ବନ୍ଦେ ମାତରମ୍ !

ସେଦିନ ଉଦ୍‌ଘୋଷକଙ୍କ କଣ୍ଠରୁ ଭାସି ଆସୁଥିବା ଘୋଷଣା ସହ ବନ୍ଦେ ମାତରମ୍‌ର 'ସମୂହ ଗାନ ଜଳ, ସ୍ଥଳ, ବନ, ଗିରି, ଆକାଶକୁ ସ୍ପନ୍ଦିତ କରି ଅଗଣିତ ଶ୍ରୋତାମାନଙ୍କ ହୃଦୟରେ ସୃଷ୍ଟି କରିଥିଲା ଅପୂର୍ବ ଆଲୋଡ଼ନ । ଦିନଟି ଥିଲା ମଧୁପୁର କୋଠି ପାଇଁ ଏକ ମହାନମୟ ମୁହୂର୍ତ୍ତ । କୁଆଁ କୁଆଁ ରଡକରି ଭୂମିଷ୍ଠ ହୋଇଥିଲା ଏକ ଶିଶୁ ସନ୍ତାନ ।

୧୯୪୮ ମସିହା ଜାନୁୟାରୀ ମାସ ୨୮ ତାରିଖ ।

ଉଦ୍‌ଘାଟନ ଉତ୍ସବର ମୁଖ୍ୟ ଅତିଥି ଥିଲେ ତତ୍‌କାଳୀନ ମାନ୍ୟବର ରାଜ୍ୟପାଳ ଶ୍ରୀଯୁକ୍ତ ଡକ୍ଟର କୈଲାଶ ନାଥ କାଟ୍‌ଜୁ । ଏହି ଉତ୍ସବରେ ତତ୍‌କାଳୀନ ପ୍ରଧାନ ମନ୍ତ୍ରୀ ଶ୍ରୀ ହରେକୃଷ୍ଣ ମହତାବ ଯୋଗ ଦେଇ ବେତାର କେନ୍ଦ୍ର ଓଡ଼ିଶା ରାଜ୍ୟର ବିକାଶ କ୍ଷେତ୍ରରେ ତଥା ଓଡ଼ିଶୀ ସଂସ୍କୃତିର ବ୍ୟାପକ ପ୍ରଚାର ପ୍ରସାର ତଥା ଅଭିବୃଦ୍ଧି ଦିଗରେ ବଳିଷ୍ଠ ଭୂମିକା ନେବ ବୋଲି ଉପସ୍ଥିତ କଳାପ୍ରେମୀ ତଥା ସଂସ୍କୃତିପ୍ରେମୀ ବୁଦ୍ଧିଜୀବୀଙ୍କୁ ସୂଚନା ଦେଇଥିଲେ । ବାଣୀକଣ୍ଠ ନିମାଇ ଚରଣ ହରିଚନ୍ଦନଙ୍କ ବୀଣାବିନିନ୍ଦିତ କଣ୍ଠରୁ ଭାସି ଆସୁଥିବା ଛାନ୍ଦ ସଙ୍ଗୀତ ପରେ ପରେ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ରଚିତ "ବନ୍ଦେ ଉତ୍କଳ ଜନନୀ........ ସମବେତ ସଙ୍ଗୀତ, ଚକ୍ରଧର ମହାପାତ୍ରଙ୍କ ଦ୍ୱାରା ରଚିତ ଏକ ହାସ୍ୟ ରସାତ୍ମକ ନାଟକ "ପୁରୋହିତଙ୍କ ମାନ୍ୟ" ଶିଶୁ କବିତା "ମେଘ ବରଷିଲା", 'ଉତ୍କଳଶ୍ରୀ' ରୂପକ ଏବଂ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କ ରଚିତ 'ଧର୍ମପଦ' ପୁସ୍ତକରୁ କିଛି ଅଂଶ, ଦିଲ୍ଲୀରୁ ପ୍ରସାରିତ ଓଡ଼ିଆରେ ସମ୍ବାଦ ତଥା ମହାତ୍ମା ଗାନ୍ଧୀଙ୍କର ପ୍ରାର୍ଥନା ସଭା କାର୍ଯ୍ୟକ୍ରମ ପରିବେଷଣ ହେବା ସଙ୍ଗେ ସଙ୍ଗେ 'ଓଡ଼ିଶାରେ ଲୋକଗୀତ' ଶୀର୍ଷକ ଆଲୋଚନା, ବାୟାନିଧି ଦାସଙ୍କର "ଆଜାଦ୍ ହିନ୍ଦୁସ୍ଥାନ" ସମବେତ ସଙ୍ଗୀତ, ଇଂରାଜୀରେ ସମ୍ବାଦ ଏବଂ ବାଳକୃଷ୍ଣ ଦାଶଙ୍କ କଣ୍ଠରୁ ଓଡ଼ିଶୀ ସଙ୍ଗୀତ ସମଗ୍ର ବେତାର କାର୍ଯ୍ୟକ୍ରମକୁ ସରସ, ସୁନ୍ଦର ତଥା ରସସିକ୍ତ କରିଥିଲା । ସେଦିନ ବହୁ ଉତ୍ସାହ ଓ ଉଦ୍ଦୀପନା ଭିତରେ ଉଦ୍‌ଘାଟନୀ ଉତ୍ସବର ପରିସମାପ୍ତି ହେଲା ସତ, ରାଜକୀୟତା ପରିହାର କରି ମଧୁପୁର କୋଠି ମହା ଉଲ୍ଲାସରେ ଉଲ୍ଲସି ଉଠୁଥିଲା ସତେ ଯେପରି "ବହୁ ଜନ ହିତାୟ, ବହୁ ଜନ ସୁଖାୟ"ର ସଂକଳ୍ପ ନେଇ ସେଇଦିନଠାରୁ ମଧୁପୁର କୋଠି କର୍ମତତ୍ପର ହୋଇ ଉଠିଲା । ଅନେକ ଶିଳ୍ପୀଙ୍କର ପ୍ରତିଭାର ବିକାଶରେ ସହାୟକ ହେଲା ମଧୁପୁର କୋଠି । ବହୁ ଧୀସମ୍ପନ୍ନ ବ୍ୟକ୍ତି, କଳାପ୍ରେମୀ ବୁଦ୍ଧିଜୀବୀଙ୍କର ହେଲା ଅପୂର୍ବ ସମାବେଶ । ଧର୍ମ, ଦର୍ଶନ, ସାହିତ୍ୟ, ଅର୍ଥନୀତି, ସ୍ୱାସ୍ଥ୍ୟ, କ୍ରୀଡ଼ା, ସଙ୍ଗୀତର ବିସ୍ତୃତ ଆଲୋଚନା ସଙ୍ଗକୁ ଶାସ୍ତ୍ରୀୟ ସଙ୍ଗୀତ, ଲଘୁ ଶାସ୍ତ୍ରୀୟ ସଙ୍ଗୀତ, ଲଘୁ ସଙ୍ଗୀତ, ଲୋକ ଗୀତ ଆଦି ପରିବେଷଣ କରାଯାଇ ଶ୍ରୋତାମାନଙ୍କର ଚିତ୍ତବିନୋଦନରେ ସହାୟକ ହେଲା । ଏତଦ୍ ବ୍ୟତୀତ ବିଜ୍ଞାନଭିତ୍ତିକ ଆଲୋଚନା, ଗ୍ରାମ୍ୟ ଶ୍ରୋତାମାନଙ୍କର ଗାଁ ଗହଳି କାର୍ଯ୍ୟକ୍ରମ, ପଲ୍ଲୀଶ୍ରୋତା ମଣ୍ଡଳୀ, କୃଷିର ବିକାଶ ନିମନ୍ତେ କୃଷିଭିତ୍ତିକ ଆଲୋଚନା, କୃଷି ପ୍ରସଙ୍ଗ, କୃଷି ସୂଚନା ତଥା ଚାଷୀ ଭାଇମାନଙ୍କୁ ପାଣିପାଗ ସଂକ୍ରାନ୍ତୀୟ ଜରୁରୀ ସୂଚନା ଦେବା, ସଙ୍ଗେ ସଙ୍ଗେ ବେକାର ଯୁବକମାନଙ୍କ ନିଯୁକ୍ତି ସୂଚନା, ନିରୁଦ୍ଦିଷ୍ଟ ବ୍ୟକ୍ତି ସମ୍ପର୍କରେ ଘୋଷଣା କାର୍ଯ୍ୟକ୍ରମର ବିଶେଷ ଅଂଶ ଭାବରେ ସ୍ଥାନ ପାଇ ଆସୁଛି ।

ନାଟକ କ୍ଷେତ୍ରରେ ଏବେ ପରୀକ୍ଷା ନୀରିକ୍ଷା ପରେ ବେତାର ନାଟକ ସଫଳତାର ଶୀର୍ଷ ସ୍ଥାନରେ ପହଞ୍ଚିଛି । ବେତାର ନାଟକର ଶୈଳୀ ସ୍ୱତନ୍ତ୍ର ଏବଂ ପରିବେଷଣ ଭିନ୍ନ ଧରଣର । କିନ୍ତୁ ଆକାଶ ବାଣୀ ପ୍ରତିଷ୍ଠା ସମୟରେ କେତେକ ରଙ୍ଗମଞ୍ଚର ନାଟକ ବେତାର ରୂପେ ନିଆଯାଇ ପ୍ରସାର ଧର୍ମୀ କରାଯାଇ ପାରୁଥିଲା; ଏବଂ ମଞ୍ଚରେ ଯେପରି ଜୀବନ୍ତ ଅଭିନୟ କରାଯାଏ, ସେହିପରି ସିଧା ସଳଖ ନାଟକ ପ୍ରସାର କରାଯାଉଥିଲା । ପରେ ପରେ ଏଇ ଧାରାର ନାଟକ ଲେଖିବା ପାଇଁ ବହୁ ବେତାର ନାଟ୍ୟକାରଙ୍କ ଲେଖନୀକୁ ପ୍ରତୀବ୍ର କରିଛି ।

ଆକାଶ ବାଣୀ, କଟକ କେନ୍ଦ୍ର ସୁନାମ ଧନ୍ୟ କଣ୍ଠଶିଳ୍ପୀମାନଙ୍କୁ ଆଦର କରି ଆଣି ତାଙ୍କୁ ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ସମ୍ମାନ ଦେବାର ସୁଯୋଗ ଦେଇଛି ।

ଭାଗବତ ପାଠ, ପୁରାଣ ପାଠ ଆଦି କାର୍ଯ୍ୟକ୍ରମ ଦ୍ୱାରା ଗ୍ରାମ୍ୟ ଶ୍ରୋତାମାନଙ୍କ ମହଲରେ ତଥା ଆଧ୍ୟାତ୍ମବାଦୀଙ୍କ ମନରେ ଭକ୍ତିର ଭାବଧାରା ଖେଳାଇ ଦେଇ ପାରିଛି । ଉଚ୍ଚକୋଟୀର ସାହିତ୍ୟିକ, କଳାକାର, କଣ୍ଠଶିଳ୍ପୀ, ବୈଜ୍ଞାନିକ, ଶିକ୍ଷାବିତ୍, କ୍ରୀଡ଼ାବିତ୍‌ମାନଙ୍କୁ ଭେଟି ସେମାନଙ୍କର ଜୀବନ, ଜୀବିକା ତଥା ଅଭିଜ୍ଞତାକୁ ନେଇ ସାକ୍ଷାତକାର କାର୍ଯ୍ୟକ୍ରମମାନ ପ୍ରସ୍ତୁତ କରାଯାଉଛି । ନାଟକ ପରି ରୂପକମାନ ପ୍ରସ୍ତୁତ କରି ନିଛକ ବାସ୍ତବ ତଥ୍ୟ ପରିବେଷଣ କ୍ଷେତ୍ରରେ ଶ୍ରୋତାମାନଙ୍କୁ ନିଜର ଜ୍ଞାନର ପରିବର୍ଦ୍ଧନରେ ସାହାଯ୍ୟ କରି ମନୋରଞ୍ଜନ ଯୋଗାଇ ପାରିଛି । ଆବାଳ-ବୃଦ୍ଧ-ବନିତା ସମସ୍ତଙ୍କର ପ୍ରିୟ ହୋଇଛି ଆକାଶ ବାଣୀ ।

ବେତାର କେନ୍ଦ୍ର ଏକ ଛୋଟ ପାଠଶାଳା କହିଲେ ଅତ୍ୟୁକ୍ତି ହେବନାହିଁ । ପ୍ରାଥମିକ ବିଦ୍ୟାଳୟ କାର୍ଯ୍ୟକ୍ରମ, ମାଧ୍ୟମିକ ବିଦ୍ୟାଳୟ ତଥା ହାଇସ୍କୁଲ ଛାତ୍ର ଛାତ୍ରୀମାନଙ୍କ ପାଇଁ କାର୍ଯ୍ୟକ୍ରମ । ବିଶ୍ୱ ବିଦ୍ୟାଳୟ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଇ ଛାତ୍ର ଛାତ୍ରୀମାନଙ୍କର ଜ୍ଞାନର ବିକାଶ କରିପାରୁଛି । ଶିକ୍ଷା ଓ ଶିକ୍ଷକ କାର୍ଯ୍ୟକ୍ରମ ମାଧ୍ୟମରେ ଶିକ୍ଷା ସମ୍ପର୍କରେ ଆଲୋଚନା, ଶିକ୍ଷାଦାନ ସମ୍ପର୍କରେ ନୂତନ ପ୍ରଣାଳୀମାନ ଆଲୋଚନା ମାଧ୍ୟମରେ ପରିବେଷଣ କରାଯାଇ ଉଭୟେ ଶିକ୍ଷକ ଓ ଛାତ୍ର ଛାତ୍ରୀମାନଙ୍କୁ ନୂତନ ଦିଗ୍‌ଦର୍ଶନ ଦେଇ ପାରୁଛି ।

ଲୋକଗୀତ କାର୍ଯ୍ୟକ୍ରମରେ ଦାସ କାଠିଆ, ପାଲା, ଏକତାରା, ଖଞ୍ଜଣୀ ଭଜନ, ସଂକୀର୍ତ୍ତନ, ଚଇତି ଘୋଡ଼ାନାଚ ଗୀତ, ଘୁମୁରା ଗୀତ, କେଳା କେଲୁଣୀ ଗୀତ, ଧୁଡୁକୀ ଗୀତ, କେନ୍ଦରା ଗୀତ, ପାଟୁଆ ଗୀତ ଓ ଗୋପାଳ ଓଗାଳ ଗୀତ, ବିଭିନ୍ନ ଲୋକ ବାଦ୍ୟ, ମୃଦଙ୍ଗ, ଚେଙ୍ଗିଣୀ ବାଦ୍ୟ, ଯୋଡ଼ି ନାଗରା, ଶଙ୍ଖ ବାଦ୍ୟ ପ୍ରଚାର କରାଯାଇ ଲୋକ ସଂସ୍କୃତିର ସୁରକ୍ଷା କରିବା ସଙ୍ଗେ ସଙ୍ଗେ ପାରମ୍ପରିକ ଲୋକ ଗୀତ ତଥା ଲୋକ କଳାର ପରିଚିତି କରାଇବାରେ ସାହାଯ୍ୟ କରି ଆସୁଛି ବେତାର କେନ୍ଦ୍ର ।

ଧାରା ବିବରଣୀ ତଥା ବେତାର ବିବରଣୀ ବେତାର କାର୍ଯ୍ୟକ୍ରମର ଏକ ଅଭିନବ ପରିକଳ୍ପନା । ଅଗଣିତ ଶ୍ରୋତାମାନଙ୍କୁ ଓଡ଼ିଶାର ବିଭିନ୍ନ ସ୍ଥାନରେ ଅନୁଷ୍ଠିତ ହେଉଥିବା ସଭା ସମିତି, ସମ୍ମାନ, ସମାବେଶ ଆଲୋଚନା ସମ୍ପର୍କରେ ସଚେତନ କରିବା ଏବଂ ଧାରା ବିବରଣୀ ପ୍ରଦାନ କରି ଶ୍ରୋତାମାନଙ୍କୁ ଅନୁଷ୍ଠିତ ହେଉଥିବା କ୍ରୀଡ଼ା ସମ୍ପର୍କରେ ପ୍ରତ୍ୟକ୍ଷ ଧାରଣା ଦେବା ଫଳରେ ବେତାର ବେଶ୍ ଲୋକପ୍ରିୟ ହୋଇପାରିଛି ।

ମହାପ୍ରଭୁ ଶ୍ରୀ ଶ୍ରୀ ଜଗନ୍ନାଥଙ୍କର ପବିତ୍ର ରଥଯାତ୍ରାର ଧାରା ବିବରଣୀ ପ୍ରଦାନ କରିବାରେ ଆକାଶ ବାଣୀ, କଟକ କେନ୍ଦ୍ର ପ୍ରମୁଖ ଭୂମିକା ଗ୍ରହଣ କରିଛି । ଓଡ଼ିଶାର ଅଗଣିତ ଭକ୍ତଗଣଙ୍କୁ ପ୍ରଭୁ ଜଗନ୍ନାଥଙ୍କ ପାଖକୁ ନେଇ ଯିବାର ଏବଂ ଉତ୍ସବର ଅପୂର୍ବ ଦୃଶ୍ୟାବଳୀକୁ ମନର କାନ୍‌ଭାସ୍‌ରେ ଆଙ୍କି ଦେବାର ପ୍ରଚେଷ୍ଟା କରିଛି ଆକାଶ ବାଣୀ, କଟକ । ସେଇ ଧାରା ବିବରଣୀ ଶ୍ରବଣ କରି ଅଗଣିତ ଭକ୍ତ ଭକ୍ତି ଭାବଧାରାରେ ଅବଗାହନ କରି ନିଜକୁ ଧନ୍ୟ ମନେ କରନ୍ତି ।

ଶ୍ରୀ ଶ୍ରୀ ଦୁର୍ଗାଙ୍କର ଶାରଦୀୟ ଉତ୍ସବରେ ଦେବୀଙ୍କ ଆରାଧନା ପାଇଁ ବେତାର କେନ୍ଦ୍ରରୁ ପ୍ରସାରିତ ଦୁର୍ଗାସ୍ତୋତ୍ର ତଥା ଚଣ୍ଡୀପାଠ କେଉଁ ଶ୍ରୋତାର ପ୍ରାଣକୁ ଭକ୍ତି ରସରେ ଆପ୍ଲୁତ ନକରିବ ? ଆଜିର ଇଲେକ୍‌ଟ୍ରୋନିକ୍ ଯୁଗରେ ବେତାର ଯଥାର୍ଥରେ ପ୍ରତ୍ୟେକ ବ୍ୟକ୍ତିର ସାଥିଟିଏ ହୋଇ ପଡ଼ିଛି । ନିଃସଙ୍ଗତା, ମାନସିକ ଅସ୍ଥିରତାକୁ ଦୂରେଇ ଦେଇ ଗୋଟିଏ ଦିନର କର୍ମମୟ ଜୀବନକୁ ସରସ, ସୁସ୍ଥ କରିବା ପାଇଁ ଦୃଢ଼ ସଂକଳ୍ପ ନେଇଛି ବେତାର କେନ୍ଦ୍ର । ଓଡ଼ିଶାର ଛୋଟ ବଡ଼ କରି ଏବେ ଛ'ଟି ବେତାର କେନ୍ଦ୍ର କାର୍ଯ୍ୟ କରୁଛି; ନିକଟ ଭବିଷ୍ୟତରେ ଆଉ କେତୋଟି ବେତାର କେନ୍ଦ୍ର ପ୍ରତିଷ୍ଠା କରାଯିବାର ଯୋଜନା ରହିଛି ।

ଆଜି ଓଡ଼ିଶାରେ ସ୍ଥାୟୀ ରଙ୍ଗମଞ୍ଚର ଅଭାବ । ମଞ୍ଚ ନାଟକ କ୍ରମେ ହ୍ରାସ ପାଉଛି; କର୍ମମୟ ମଣିଷର ସମୟ ନାହିଁ, ଦୀର୍ଘ ସମୟ ଧରି ବସି, ଉଜାଗର ରହି ଯାତ୍ରା କିମ୍ବା ଥିଏଟର ଦେଖିବାକୁ । ଅବଶ୍ୟ ଦୂର ଦର୍ଶନ ଆସିବା ଫଳରେ ଶ୍ରୋତାମାନଙ୍କ ମନୋରଞ୍ଜନରେ ସହାୟକ ହୋଇଛି । ତଥାପି ବେତାର ତା'ର କାର୍ଯ୍ୟକ୍ରମ ପ୍ରଚାର ଓ ପ୍ରସାରରେ ଅନବରତ କାର୍ଯ୍ୟରତ । ଓଡ଼ିଶାର ପ୍ରଥମ ବେତାର କେନ୍ଦ୍ର ମଧୁପୁର କୋଠିରୁ ଆସି ଏବେ କାଞ୍ଚନଜେଙ୍ଘା ରୋଡ଼ରେ ନିଜସ୍ୱ ଗୃହରେ କାର୍ଯ୍ୟକ୍ରମ ପ୍ରସାରଣ କରିବାରେ ଲାଗିଛି । ତଥାପି ଆକାଶ ବାଣୀ, କଟକ କେନ୍ଦ୍ରର ଜନ୍ମକାତକରେ ଲେଖା ହୋଇ ରହିଛି ସେଦିନର ଅବିସ୍ମରଣୀୟ ସ୍ମୃତି; ମଧୁପୁର କୋଠି ତାର ସୂତିଗୃହ ।

ଆକାଶବାଣୀ,
କଟକ-୧ ।

# ଛାତ୍ରବତ୍ସଳ ମାନସିଂହ

ପରମାନନ୍ଦ ମିଶ୍ର

ମନମୋହିନୀ ଚିଲିକାର କମନୀୟ ପରିବେଶରେ ୧୯୦୫ ଖ୍ରୀଷ୍ଟାବ୍ଦ ନଭେମ୍ବର ୧୩ ତାରିଖରେ ମାୟାଧର ମାନସିଂହ ଜନ୍ମଗ୍ରହଣ କରିଥିଲେ–ପାରିକୁଦସ୍ଥ ନନ୍ଦଳା ଗ୍ରାମରେ। ତାଙ୍କର ପିତାଙ୍କ ନାମ ପଦ୍ମଚରଣ ମାନସିଂହ ଓ ମାତାଙ୍କ ନାମ ଭଦ୍ରା ଦେବୀ। ମାତ୍ର ଚାରି ବର୍ଷ ବୟସରେ ସେ ପିତା ମାତା ଉଭୟଙ୍କୁ ହରାଇ ସାଆନ୍ତ ବାପାଙ୍କ ତତ୍ତ୍ୱାବଧାନରେ ବଢ଼ି ଆଠପଢ଼ା ଶେଷ କଲେ। କିଏ ଜାଣିଥିଲା ଏ ଚାରିବର୍ଷର ଛେଉଣ୍ଡ ଶିଶୁଟି ବଡ଼ ହୋଇ ଦିନେ ଏକାଧାରରେ ଓଡ଼ିଶାର ପ୍ରତିଷ୍ଠିତ କବି, ସମାଲୋଚକ, ଶିକ୍ଷାବିତ୍ ଓ ନାଟ୍ୟକାର ହୋଇ ଓଡ଼ିଶା ମନ୍ଦିର ଭାସ୍କର ଶିଳ୍ପ, ନୈପୁଣ୍ୟ, ଓଡ଼ିଶୀ ନୃତ୍ୟର ମର୍ଯ୍ୟାଦା, ଓଡ଼ିଶା ସାହିତ୍ୟର ଇତିହାସ ଓ ଏ ଦେଶର ଗୌରବମୟ ଚରିତ୍ର-ଇତିହାସର ଆଲେଖ୍ୟ ବିଶ୍ୱଦରବାରରେ ପ୍ରତିଷ୍ଠା କରିବ।

କିଶୋର ମାନସିଂହ ଏହି ସାଗରବଳୟିତ ଅଞ୍ଚଳରେ ପ୍ରାଥମିକ ଶିକ୍ଷା ଶେଷ କରି ସତ୍ୟବାଦୀ ବନବିଦ୍ୟାଳୟରେ ନାମ ଲେଖାଇଲେ। ତେଣୁ ତାଙ୍କ ହୃଦୟ କନ୍ଦରରେ ଜାତୀୟତା ଓ ମାନବିକତାର ଭାବ ଝଙ୍କୃତ ହୋଇଥିଲା ଓ ମନମନ୍ଦିର ପ୍ରତିବିମ୍ବରେ ଝଲକି ଉଠିଥିଲା। ତା'ପରେ ସେ ଖୋର୍ଦ୍ଧାରେ ପଢ଼ିବା ବେଳେ ଶିକ୍ଷାୟତନର ବାତାବରଣ ମଧ୍ୟରେ ନିଜର ସଂସ୍କୃତି ଓ ମାତୃଭାଷାର ସ୍ୱରୂପ ଚିହ୍ନିବାର ସୁଯୋଗ ଲାଭ କରିଥିଲେ। ସେହି କିଶୋର ବୟସରେ ସେ ଅହେତୁକ ମମତା ନେଇ "ମାଆ ଓଡ଼ିଶା" ଓ "କୋଣାର୍କ" କବିତା ରଚନା କରିଥିଲେ। ସେହିଠାରେ ହିଁ ସେ ସ୍ୱପ୍ନାତୁର ମନ ନେଇ ସହରର ଉପକଣ୍ଠରେ ଥିବା ବରୁଣେଇ ପାହାଡ଼କୁ ଯାଇ ପ୍ରକୃତିର ଶୋଭା ସମ୍ପଦରେ ନିଜକୁ ହଜାଇ ଦେଉଥିଲେ।

ରେଭେନ୍‌ସା କଲେଜରେ ଛାତ୍ର ଥିବାବେଳେ –ଦିନେ ରେଭେନ୍‌ସାରେ ଛାତ୍ରଜୀବନ– ମାୟାଧର ମାନସିଂହ କେତେଜଣ ସହପାଠୀଙ୍କ ସହିତ ତାଙ୍କର ଭାବୀ ପତ୍ନୀ କୁମାରୀ ହେମଲତାଙ୍କୁ ନେଇଥାନ୍ତି, ମୟୂରଭଞ୍ଜ ଜିଲ୍ଲାର କଇଞ୍ଝିଆକୁ ଯାଇଥାନ୍ତି। ସେଠାରେ ସେମାନେ ସମସ୍ତେ ହେମଲତା ଓ ତାଙ୍କର ଜଣେ ଭାଇଙ୍କୁ ସାଙ୍ଗରେ ଧରି ଗୋଟିଏ କାରରେ ଖିଚିଙ୍ଗ୍ ଦେଖିବାକୁ ଯାଇଥାନ୍ତି। ମୟୂରଭଞ୍ଜର ପ୍ରତ୍ନତତ୍ତ୍ୱ ବିଭାଗ ପକ୍ଷରୁ ଗୃହ ନିର୍ମିତ ହୋଇ ସେଇଠି ମୂର୍ତ୍ତି ସବୁ ରଖାଯାଇଥାଏ, ଗୋଟିଏ ଛୋଟ ମିଉଜିୟମ ଭଳି। ତା'ପାଖକୁ ଶାଳବନ ବୀଥିକା। ସେଇଠି କାର୍‌ଟି ଥିଆ ହୋଇଥାଏ। କାର୍‌ରେ ସ୍ଥାନ ନ ହେବାରୁ ସାଙ୍ଗ ଦୁଇଜଣ ସାଇକେଲରେ ପଛରେ ଆସୁଥାଆନ୍ତି। ସେମାନେ ବହୁତ ସମୟଯାଏ ନ ଆସିବାରୁ ମାନସିଂହ, ହେମଲତା ଓ ତାଙ୍କ ଭାଇଙ୍କୁ ଛାଡ଼ି ଆଉ ସମସ୍ତେ ସେହି ସାଙ୍ଗମାନଙ୍କୁ ଖୋଜିବାକୁ ଗଲେ। ଏପରି ସମୟରେ ମାନସିଂହ ଭାବୀ ପତ୍ନୀଙ୍କୁ କେତେକ ସାଧାରଣଜ୍ଞାନ ବିଷୟକ ପ୍ରଶ୍ନ ପଚାରିଲେ ଓ ଶେଷରେ ମନ୍ତବ୍ୟ ଦେଲେ, "ହଉ, ଭଲକରି ପଢ଼। ଭଲ ବର ପାଇବ। ଏହା ଏକ ମଜାଦାର୍ ଓ ପ୍ରାଣବନ୍ତ ମନ୍ତବ୍ୟ। ସେଥର ମାନସିଂହ ଓ ତାଙ୍କ ସାଙ୍ଗମାନଙ୍କ ଇଚ୍ଛାରଭିତରେ ହେମଲତାଙ୍କର ପାଣି ହେଲା ସିନା, କିନ୍ତୁ ସେମାନଙ୍କର ପରାମର୍ଶ ହେଲା, ତାଙ୍କୁ ପାଠ ପଢ଼ିବାକୁ।

ଓଡ଼ିଶାରେ ଆଉ କେଉଁଠି ବାଳିକା ହାଇସ୍କୁଲ ନ ଥିବାରୁ ହେମଲତାଙ୍କ ପାଠପଢ଼ା ହେଲା ରେଭେନ୍‌ସା ବାଳିକା ବିଦ୍ୟାଳୟରେ। ସେଠାକୁ ଅନେକଥର ମାନସିଂହ ଆସନ୍ତି। ସେତେବେଳେ ହେମଲତା ଷଷ୍ଠ ସପ୍ତମ ଶ୍ରେଣୀର ଛାତ୍ରୀ। ମାନସିଂହ କେତେଥର ଏପରି ଆସିବାରେ ହେମଲତାଙ୍କୁ ଲାଜ ଲାଜ ଲାଗୁଥାଏ। ଥରେ ସାହାସ ସଞ୍ଚୟ କରି ସେ ମାନସିଂହଙ୍କୁ କହି ପକାଇଲେ"ମୋର ମଜଳା ଶୁଣିବାକୁ ଗୋଟିଏ ଲୁଚି ଦରକାର। ତା'ପରେ ମାନସିଂହ ଲୁଚିସହ "ପଞ୍ଚସତୀ" ନାମକ ବହି ଆଣି ଦେଲାବେଳେ ଥଟ୍ଟାଳିଆ ଭାଷାରେ କହିଲେ, "ମଜଳା ନୁହେଁ ମୋଜା"। ତା'ପରେ ମାନସିଂହ ନାନା ପ୍ରକାର ସମାଦ୍ୟ ବହି ଆଣି ଦେଉଥାଆନ୍ତି ଓ ହେମଲତା ସେଥିରୁ ମଜାଦାର ଗପସବୁ ପଢ଼ନ୍ତି। ସେଥିରେ ଥିବା କବିତାମାନଙ୍କର ନାମ ହେଲା, "ଶଙ୍କିତ ସ୍ନେହ", "ଦୂରେଇଦ" ଓ "ପ୍ରେମର ଭାଷା" ଏ ଭଳି କବିତାମାନ ପଢ଼ିବାରେ କବିପତ୍ନୀଙ୍କ ହୃଦୟରେ ଆଲୋଡ଼ନ ସୃଷ୍ଟି ହେଉଥାଏ। ବିଶେଷକେ "ସ୍ୱର୍ଣ୍ଣକେଶୀ ସେହି ବାଳିକାର ପ୍ରେମ ପାଇଁ, ଏ ଜୀବନେ ମୋର ନଦେବାର କିଛି ନାହିଁ" ପଂକ୍ତିଗୁଡ଼ିକ

ଲିଖେ ତାଙ୍କ ଅନୁଭବ କରିଥିଲା । ଥରେ ଖାତାଟିଏ କବି କୁମାରୀ ହେମଲତାଙ୍କ ପାଇଁ ମାନସିଂହ ତାଙ୍କୁ ପଠାଇ ଦେଇଥିଲେ । ସେ ତାଙ୍କୁ ଉତ୍ତର ଲେଖି ପଠାଇଲେ । ସେ ଆଉ ଏକ ପତ୍ର "ଧୂପ" ନାମରେ ପ୍ରକାଶ କରିଥିଲେ । ପ୍ରଥମ ସଂସ୍କରଣର ଭୂମିକାରେ ଲେଖାଥିଲା "ପ୍ରେମିକା ଦେବୀଙ୍କ ହାତରେ ଅର୍ପଣ କରୁଛି" ପରେ ଯେତେବେଳେ "ଧୂପ" କବିତାର ମର୍ମ ହେମଲତା ବୁଝିପାରିଲେ ସେତେବେଳେ, ଉତ୍ସର୍ଗଟି ଛାଡ଼ି ଦେବାକୁ ମାନସିଂହଙ୍କୁ ଅନୁରୋଧ କଲେ ଓ ପରବର୍ତ୍ତୀ ପ୍ରକାଶନରେ ତାହା ଉଠାଗଲା । ମାନସିଂହ ରାଧାନାଥ ଗ୍ରନ୍ଥାବଳୀରୁ "ଚନ୍ଦ୍ରଭାଗା", "ଉଷା", ଓ "କେଦାରଗୌରୀ" ହେମଲତାଙ୍କୁ ପଢ଼ାଇ ବହୁତ ମଜାଳିଆ ପ୍ରଶ୍ନ ମଧ୍ୟ ପଚାରନ୍ତି ।

## ବିବାହ ଓ ଶିକ୍ଷକତା :

ହେମଲତାଙ୍କ ସହିତ ମାନସିଂହଙ୍କର ବିବାହ ଯଥାରୀତି ସମାହିତ ହେଲାପରେ ମାନସିଂହ ପାଟନାରେ ଏମ୍.ଏ. ପରୀକ୍ଷା ଦେଇଥିଲେ । ତା'ପରେ ସେ ପଢ଼ିଲେ ବି.ଇଡ୍. । ବି.ଇଡ୍. ପରୀକ୍ଷା ପରେ ସେ ସତ୍ୟବାଦୀ ସ୍କୁଲରେ ଅବୈତନିକ ଶିକ୍ଷକ ପଦରେ ଯୋଗଦେଲେ । ସେହିଠାରେ ପୁଣି ଦେଶାତ୍ମବୋଧ ତାଙ୍କ ହୃଦୟରେ ସଞ୍ଚାରିତ ହେଲା । ତା'ର କିଛିଦିନ ପରେ ସେ ବାଣପୁର ହାଇସ୍କୁଲରେ ୬୦ ଟଙ୍କା ମାସିକ ଦରମାରେ ଶିକ୍ଷକତା କଲେ । ସତ୍ୟବାଦୀ ବିଦ୍ୟାଳୟ ଗ୍ରାଣ୍ଡାରେ ପଣ୍ଡିତ ଗୋଦାବରୀଶ ମିଶ୍ର ସେଠାରେ ଯେତେବେଳେ ସ୍କୁଲ ଆରମ୍ଭ କରିଥାନ୍ତି ମାନସିଂହ ସବୁ ସକାଳେ ରାତି ଥାଉଁ ଥାଉଁ ବ୍ୟାୟାମ କରନ୍ତି ଓ ଆସନ ମଧ୍ୟ କରନ୍ତି । ସେହିଠାରେ ମାନସିଂହ ପରିବାରର ପଡ଼ୋଶୀ ଥିଲେ ଗୋଟିଏ ପାଟରା ପରିବାର ଓ ଅନ୍ୟଟି ଗଉଡ଼ ପରିବାର । ଗଉଡ଼ଘର ବୁଢ଼ାର ଝିଅ ନାମ ହେମ । ସେ ବାହାହୋଇ ଶାଶୁଘରକୁ ଯାଇଥାଏ । ଗଉଡ଼ଘର ବୁଢ଼ୀ ହେମଲତାଙ୍କୁ ଧର୍ମ ଝିଅ କରିଥାଏ । ତାଙ୍କ ଘରେ ଥିବା ଗୋଟିଏ ପାଟରା ଯୁବକ ସଙ୍ଗୀତ ପ୍ରିୟ । ସେ ଦିନେ ଆସି ମାନସିଂହଙ୍କୁ କେତୋଟି ଗୀତ ମାଗିଲା । ମାନସିଂହ ତଦୀୟ ସହଧର୍ମିଣୀଙ୍କୁ କବିତା ଖାତା ତିନୋଟି ଦେବାକୁ କହିଲେ । ତା'ପରେ ସେଠା ବସା ଭାଙ୍ଗିଲା । ମାନସିଂହ ହେଲେ ଦକ୍ଷିଣବାସୀ । ଶ୍ରୀମତୀ ହେମଲତା କଟକ ଆସିଲେ । ମାତ୍ର ସେ ବହି ଆଉ ଫେରିଲାନି ବା ଫେରିବାର ନ ଥିଲା । ଚିଠି ଓ ଲୋକ ପଠାଇଲେ ମଧ୍ୟ କିଛି ଫଳ ହେଲାନାହିଁ । ମାନସିଂହ ସେଥିପାଇଁ ଦୁଃଖିତ ହେଲେ । ସେ ସଦାସର୍ବଦା ଉଦାସୀନ ରହୁଥିଲେ । ତାଙ୍କୁ ଦେଖିଲା ଲୋକେସେ ସନ୍ନ୍ୟାସୀ ହୋଇଯିବେ ବୋଲି ସନ୍ଦେହ କରୁଥିଲେ । ତା'ପରେ ଜଣାପଡ଼ିଲେ ସେ କାହାରି ସାହାଯ୍ୟ ବିନା ଚଳିପାରିବେନି ।

ସେ ଥିଲେ ଉଦାର ହୃଦୟ, କାହାପ୍ରତି ରାଗରୋଷ ନ ଥିଲା । ତାଙ୍କର ପ୍ରତିବେଶୀ ତାଙ୍କୁ ବହୁତ ହଇରାଣ କରୁଥାନ୍ତି । ସେମାନେ ପଇସ କୋଡ଼ିଏ ଫୁଟର ଗୋଟିଏ ପାଚେରୀ ଭାଙ୍ଗିଦେଲେ । ପୁଲିସ୍ କେସ୍ ହେଲା । ମାନସିଂହ ଦିନେ ହେଲେ ସେ ବିଷୟରେ ତ୍ଦବିର୍ କରନ୍ତି ନାହିଁ କି ବୁଝନ୍ତି ନାହିଁ । ବରଂ ସେଇ ପ୍ରତିବେଶୀ ଘରକୁ ଯାଇ କୌଣସି ଏକ ଉତ୍ସବ ଉପଲକ୍ଷେ ଉପହାର ସହ ଯୋଗ ଦିଅନ୍ତି ।

## ଡକ୍ଟରେଟ୍ ଲାଭ :

ଡରହାମ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ ଉପାଧି ଲାଭ କଲାପରେ ମାନସିଂହ ଓଡ଼ିଶାର ପୂର୍ବତନ କରଦ ରାଜ୍ୟ ଆଠଗଡ଼ରେ ରାଜା ପଞ୍ଚମଜର୍ଜ ଉଚ୍ଚ ଇଂରାଜୀ ବିଦ୍ୟାଳୟ (ବର୍ତ୍ତମାନର ବିଦ୍ୟାପୀଠ) ବିଦ୍ୟାପୀଠାରେ ପ୍ରଧାନ ଶିକ୍ଷକ ଭାବେ ଯୋଗ ଦେଲେ । ସେତେବେଳେ ଛାତ୍ର ମଣ୍ଡଳୀ ଓ ଅଭିଭାବକ ତଥା ତତ୍କାଳୀନ ରାଜାସାହେବଙ୍କ ଆଖିରେ ସେ ଜଣେ ଆଦର୍ଶ ... ହୋଇପଡ଼ିଥିଲେ । ସେ ପିଲାମାନଙ୍କ ଜୀବନ ଗଢ଼ିବା ... ଶ୍ରେଣୀ ପ୍ରକୋଷ୍ଠର କାନ୍ଥମାନଙ୍କରେ "Rome was not built in a day" ଓ "Honesty is the best policy" ଭଳି ଜୀବନାଦର୍ଶପୂର୍ଣ୍ଣ ପ୍ରବାଦମାନ ଲେଖାଥିବା ପୋଷ୍ଟରମାନ ଟଙ୍ଗାଇଥିଲେ । ଏହାସବୁ ଛାତ୍ରମାନଙ୍କ ମନଉପରେ ଗଭୀର ପ୍ରଭାବ ପକାଇଥିଲେ ।

ସେତେବେଳେ ଅଧିକାଂଶ ପିଲାଙ୍କର ଆର୍ଥିକ ସ୍ୱଚ୍ଛଳ ଅବସ୍ଥା ନଥିବାରୁ ପ୍ରଧାନ ଶିକ୍ଷକ ଡକ୍ଟର ମାନସିଂହ ବରଦ ପଇସା ... ଧଳା ମାର୍କିନ କନାରେ ତିଆରି ଗୋଟିଏ ପ୍ରକାର ଶସ୍ତା ପୋଷାକ "ଗେରୁଆ ଫତେଇ" ପିଲାମାନଙ୍କ ପାଇଁ ସ୍କୁଲ ୟୁନିଫର୍ମ ଭାବରେ ପ୍ରଚଳନ କରିଥିଲେ । ଡକ୍ଟର ମାନସିଂହ ମଧ୍ୟ ନିଜେ ... ଧଳାକନାରେ ତିଆରି ଫୁଲ୍‌ପ୍ୟାଣ୍ଟ ଓ କ୍ୟାଲର୍ ଯୁକ୍ତ ଧଳା ଫତେଇ ଗେରୁ ମଡ଼ାଇ ପିନ୍ଧି ସ୍କୁଲକୁ ଆସୁଥିଲେ । ପୋଷାକ ତାଙ୍କର ଥିଲା ଅତି ଶସ୍ତା ଓ ଆଡ଼ମ୍ବର ଶୂନ୍ୟ । ଏହା ପିଲାମାନଙ୍କ ମନରେ ... ଆଦର୍ଶ ଜାତୀୟ ଚରିତ୍ର ଗଠନର ଆଭିମୁଖ୍ୟ ସୃଷ୍ଟି କରୁଥିଲା । ସେ ମଧ୍ୟ ବେଳେ ବେଳେ ତନ୍ତବୁଣା ଲୁଗା ଓ ତନ୍ତ ବୁଣା ... ପଞ୍ଜାବି ପିନ୍ଧି ସ୍କୁଲକୁ ଆସନ୍ତି । ଗରିବ ମେଧାବୀ ଛାତ୍ରଙ୍କୁ ସେ ନିଜ ପକେଟରୁ ପଇସା ଦେଇ ତାଙ୍କପାଇଁ ଏ ଭଳି ପୋଷାକ ବନ୍ଦୋବସ୍ତ ନିଜେ କରନ୍ତି ।

## ଛାତ୍ର ପରାୟଣ ଶିକ୍ଷକ :

ଡକ୍ଟର ମାନସିଂହ ନିଜେ ଜଣେ ମେଧାବୀ ଛାତ୍ର ଥିଲେ ଓ ... ଗରିବ, ବିଦ୍ୟୋତ୍ସାହୀ ତଥା ମେଧାବୀ ଛାତ୍ରମାନଙ୍କୁ ପାଠପଢ଼ାରେ ଉତ୍ସାହିତ କରି ଗରିବ ଛାତ୍ରପାଣ୍ଠିରୁ ସାହାଯ୍ୟ ଦେଉଥିଲେ ଓ ମଝିରେ ମଝିରେ ସେମାନଙ୍କ ଅଭାବ ଅସୁବିଧାର ଖବର ବୁଝୁଥିଲେ । ଏଭଳି ଛାତ୍ରଙ୍କୁ ସେ ନିଜ ପୁଅ ଭଳି ଭଲ ପାଉଥିଲେ । ପରେ ଜୀବନରେ ନିଜେ ଯେତେ ଉଚ୍ଚପଦସ୍ଥ ହେଲେ ମଧ୍ୟ ସେମାନେ ... ଉଚ୍ଚଶିକ୍ଷା ଲାଭ କରୁଥିବା ଶିକ୍ଷାନୁଷ୍ଠାନମାନଙ୍କୁ ଯାଇ ତାଙ୍କୁ ଦେଖା କରିବାକୁ ଆସିବାକୁ ପଛାଉ ନଥିଲେ । ସେ ନିଜର ଛାତ୍ରମାନଙ୍କୁ ଏତେ ଭଲ ପାଉଥିଲେ ଯେ ବାଟରେ ଘାଟରେ କାହାକୁ ଦେଖିଲେ ତାଙ୍କୁ ନିଜ ଘରକୁ ଡାକିନେଇ ଘରର ସୁବିଧାଦ ବୁଲାଇ ତାଙ୍କୁ ଖୁଆଇ ପିଆଇ ଆନନ୍ଦ ମନରେ ଗପସପ କରି ବିଦାୟ ଦେଉଥିଲେ । ଯିଏ ଥରେ ତାଙ୍କ ଛାତ୍ର ହେବାର ସୌଭାଗ୍ୟ ଲାଭ କରିଛି ସେ ପାଉଥିଲେ ତାଙ୍କୁ ମନେରଖି ତା'ଉପରେ ଜୀବନ କ୍ଷେତ୍ରରେ ଉତ୍ତରୋତ୍ତର ଉନ୍ନତି ପାଇଁ ଆଶୀର୍ବାଦ ଢାଳି ଦେଉଥିଲେ ।

ସେ ଯେପରି ସ୍ନେହୀ, ଦରଦୀ ମଣିଷଟିଏ ଥିଲେ ସେଭଳି କଠୋର ପ୍ରଶାସକ ମଧ୍ୟ ଥିଲେ, ଉଭୟ ଶିକ୍ଷାନୁଷ୍ଠାନରେ ତଥା ଛାତ୍ର ପ୍ରେମୀମାନଙ୍କ ପାଇଁ । ନିଜର ଘରୋଇ ଗୁରୁଜଙ୍କୁ ତାଙ୍କର ଥରେ ଖୋଜିବା ଯେ ଖୁଲିଖୁଲି ପାରୁଥିବା ଶିଶୁପ୍ରତିଙ୍କୁ ନ ଥରେ ଖୋଜିବା ପାଇଁ । ଦିନକର କଥା । ନିଜର ଗୁରିବର୍ଷର ପୁଅ ଛୁଆ ସହିତ ବଜାରକୁ ଯାଇଥିଲା । ବଜାର ଫେରନ୍ତା ପିଲାଟି ନିକଟରେ କାଣ ହେବାକୁ । ଗୁରୁର ବିଗୁରା କରେ କ'ଣ ? ପିଲାଟି ଗୋଟାଏ ଧୂଳି ମାଟିରେ ଗଡ଼ିଗଲେ ମଧ୍ୟ ଗୁରୁର ତାକୁ ନ ଉଠାଇ ସେଇ ଧୂଳି ମାଟିରେ ଗଡ଼ୁଥିବା ଅବସ୍ଥାରେ ବି ତାକୁ ସେଠାରେ ଛାଡ଼ି ଗୁଲି ଆସିଲା । ଦେଖଣାହାରି ଛାତ୍ର କେତେଜଣ ପିଲାଟିକୁ ଉଠାଇ ତା' ଜାମାପଟାରୁ ଧୂଳି ଝାଡ଼ି ବିସ୍କୁଟ ଖୁଆଇ ତାଙ୍କ ଥାପି ମାଆ ରହୁଥିବା ବଙ୍ଗଳା (Indian Guest House) ତାକୁ ନେଇ ଛାଡ଼ିଦେଇ ଆସିଲେ । ଶିକ୍ଷକ ହେଉ ବା ଛାତ୍ର ହେଉ ଯେତେବେଳେ କାହାର କିଛି ଦୋଷ ତାଙ୍କ ଆଖିରେ ପଡ଼ିଲେ ସେ କାହାପ୍ରତି ହେଲେ କଠୋର ଦଣ୍ଡ ବିଧାନ ବ୍ୟବସ୍ଥା କରିବା ଠ ଦୂରର କଥା– ସେଥିପ୍ରତି ଗୁରୁତ୍ୱ ମଧ୍ୟ ଦେଉ ନ ଥିଲେ । କେବଳ ସମ୍ପୃକ୍ତ ଶିକ୍ଷକ ବା ଛାତ୍ର ପ୍ରତି ଓଡ଼ିଆ ଓ ଇଂରାଜୀରେ ଦୁଇ ତିନୋଟି ମନ୍ତବ୍ୟ ପ୍ରୟୋଗ କରୁଥିଲେ । ସେଗୁଡ଼ିକ ହେଲା–"କି ଅଦ୍ଭୁତ ପିଲା", ଅଦ୍ଭୁତ ଲୋକ" ଏବଂ "Hon'ble" ଓ "Hopeless", ନିଜେ ଡକ୍ଟର ମାନସିଂହ ଏଭଳି ଏକ ଉଦାର, ସ୍ନେହୀ ଓ ଆଦର୍ଶ ମଣିଷ ଥିଲେ ଯେ ସ୍କୁଲରେ ଶୃଙ୍ଖଳା ଚିର ବିରାଜମାନ ଥିଲା ।

ଉଚ୍ଚ ଶ୍ରେଣୀମାନଙ୍କରେ ଶିକ୍ଷାଦାନ କରିବା ସମୟରେ ଡକ୍ଟର ମାନସିଂହ ବିଲାତରେ କିପରି କଷ୍ଟ କରି ପାଠ ପଢୁଥିଲେ ତା'ର କାହାଣୀ ଛଳରେ ଛାତ୍ରମାନଙ୍କ ଆଗରେ ପରିବେଷଣ କରନ୍ତି ଓ କହନ୍ତି ଯେ ସେ ଡରାହାମରେ ଡକ୍ଟରେଟ୍ କରିବା ସମୟରେ ନିଜେ ନିଜ ହାତରେ ଖାଇବା ସାମଗ୍ରୀ ପ୍ରସ୍ତୁତ କରନ୍ତି ଓ ତାଙ୍କ ମାସିକ ଖର୍ଚ୍ଚ ପ୍ରାୟ ୮୦ ଟଙ୍କାରେ ଚଳିଯାଉଥିଲା । ଏହା କହିବା ସହିତ ସେ ଛାତ୍ରମାନଙ୍କୁ ଉପଦେଶ ଦେଉଥିଲେ ଯେ ପାଠପଢ଼ିବା ପାଇଁ କଷ୍ଟ ସ୍ୱୀକାର କରି ଓ ଦରକାର ହେଲେ ହାତରେ ନିଜର ଖାଦ୍ୟଦ୍ରବ୍ୟ ପ୍ରସ୍ତୁତ କରି ପଢ଼ିବା ଶ୍ରେୟସ୍କର ।

## ପାଶ୍ଚାତ୍ୟ ସ୍ମୃତିର ମୂଲ୍ୟ :

ଡକ୍ଟର ମାନସିଂହଙ୍କ ବ୍ୟକ୍ତିତ୍ୱ ସମ୍ପର୍କରେ ସ୍ୱର୍ଗତ ଗୋଲକ ବିହାରୀ ଧଳ କହନ୍ତି– "ମୁଁ ଯେତେବେଳେ ଆଇ:ଏ ପଢୁଥିଲି ସେତେବେଳେ ତାଙ୍କୁ ଦିନେ କ୍ଲାସରେ ଦେଖିଲି, ବେଶ୍ ସୁସ୍ଥ ସବଳ ହସ ହସ ମୁହଁ ଓ ପ୍ରସନ୍ନଚିତ୍ତ ବ୍ୟକ୍ତି । କଥା କଥାକେ ହସନ୍ତି । ହସିଲାବେଳେ ଖୁବ୍ ଜୋରରେ ହୃଦୟ ଖୋଲି ହସନ୍ତି । ବିଲାତରେ ରହି ମଧ୍ୟ ଦାନ୍ତଚିପା ବିଲାତି ହସ ସେ ଜାଣି ନ ଥିଲେ । ସେ ଆମର ବେଶୀଦିନ କ୍ଲାସ ନେଇ ନଥିଲେ । କିନ୍ତୁ ସିନିୟର ଅନେକ ପିଲାମାନଙ୍କଠାରୁ ତାଙ୍କ ବିଷୟରେ ମଜା ମଜା କଥା ମୁହଁ ଶୁଣାଯାଏ । ଖୁବ୍ ଅଳ୍ପ ସମୟ ଭିତରେ ସେ ସେଠାରୁ ବଦଳିଗଲେ । ଏହାପରେ ମାନସିଂହ ୧୯୬୮ ମସିହା ଅକ୍ଟୋବର ମାସରେ ଗଙ୍ଗାଧର ମେହେର କଲେଜର ଅଧ୍ୟକ୍ଷ ହେଲେ । ଗଙ୍ଗାଧର ମେହେର କଲେଜର ଅଧ୍ୟକ୍ଷ ହିସାବରେ ସେ ପଶ୍ଚିମ ଓଡ଼ିଶାର ଶିକ୍ଷା ଓ ସଂସ୍କୃତି କ୍ଷେତ୍ରରେ ଜଣେ ଆଦର୍ଶ ବ୍ୟକ୍ତିତ୍ୱ ହୋଇ ପଡ଼ିଥିଲେ । ୧୯୬୭ ମସିହାରେ ସେ ଗଙ୍ଗାଧର ମେହେର କଲେଜ ଅଧ୍ୟକ୍ଷ ଭାବେ ବିଦାୟ ନେଇଥିଲେ ହେଁ ସେ ଥିଲେ ଛାତ୍ରମାନସରେ ଅବିସ୍ମରଣୀୟ ।

ଡକ୍ଟର ମାନସିଂହଙ୍କର ସମସାମୟିକ ବନ୍ଧୁଙ୍କ ସହିତ ସାକ୍ଷାତବେଳେ ସମ୍ମାନ ଓ ସ୍ନେହରେ ତାଙ୍କ କୁଳନାମ ପରେ "ଜୀ" ଲଗାଇ ସମ୍ବୋଧନ କରନ୍ତି ଓ ସାଦର ସମ୍ଭାଷଣ କରନ୍ତି ଯଥା–"ନାଥଜୀ", "ମିଶ୍ରଜୀ" ଇତ୍ୟାଦି ନିଜଠାରୁ ବୟସ୍କ କୌଣସି ଶିକ୍ଷକ ବା ସେଭଳି ଲୋକ ତାଙ୍କୁ ଦେଖା କରିବାକୁ ଆସିଲେ ସେ ଭକ୍ତି ସହକାରେ ଠିଆହୋଇ ତାଙ୍କୁ ପ୍ରଣାମ କରନ୍ତି ଓ "ପଣ୍ଡିତ ମହାଶୟ ବୋଲି ସମ୍ବୋଧନ କରି ତାଙ୍କ ସହିତ ସୌଜନ୍ୟ ମୂଳକ କଥୋପ କଥନ କରନ୍ତି ।

ଡକ୍ଟର ମାନସିଂହ କୌଣସି ଅନୁଷ୍ଠାନର ଅଧ୍ୟକ୍ଷ ଥିଲାବେଳେ ସେଠାରେ ତଥା ଛାତ୍ରାବାସ ହତାମାନଙ୍କରେ ସୁନ୍ଦର ସୁନ୍ଦର ଫୁଲଗଛମାନ ରୋପଣ କରି ସୌନ୍ଦର୍ଯ୍ୟ ତଥା ପରିବେଶ ସୃଷ୍ଟି କରୁଥିଲେ । ବଗିଚାମାନଙ୍କରୁ କୌଣସି ଶିକ୍ଷକ ବା ଛାତ୍ର ଭୁଲରେ ଫୁଲଟିଏ ତୋଳିବା ଅତି ଗର୍ହିତ ଦୋଷ ବୋଲି ଧରାଯାଉଥିଲା । ଅନୁଷ୍ଠାନର କୌଣସି ଗୁରୁଜନ ସ୍ଥାନୀୟ ଲୋକ ମଧ୍ୟ ସେଥିରେ ହାତ ଦେବାକୁ ପୂରାପୂରି ମନା ଥିଲା । ସ୍ଥାନେ ସ୍ଥାନେ ସେ ଗୋପାଳନ କରାଇ ଛାତ୍ରମାନଙ୍କୁ ଦୁଧ ଖାଇବାକୁ ଦେଉଥିଲେ ।

## ପ୍ରକୃତି ଉପାସକ କବି :

ଆଠଗଡ଼ ସ୍କୁଲରେ ଶିକ୍ଷକ ଥିଲାବେଳେ ସେ ଅଞ୍ଚଳର ପ୍ରାକୃତିକ ସୁଷମା ସମ୍ବଳିତ ସ୍ଥାନମାନଙ୍କୁ ସଙ୍ଗୀକ ଛାତ୍ରମାନଙ୍କ ଗହଣରେ ଯାଇ ପ୍ରାକୃତିକ ସୌନ୍ଦର୍ଯ୍ୟ ଉପଭୋଗ କରୁଥିଲେ । ସେତେବେଳେ କବି ମଧ୍ୟ ଢେଙ୍କାନାଳ ସହର ନିକଟସ୍ଥ–ସପ୍ତଶଯ୍ୟା ପର୍ବତକୁ ଯାଇ ସେଠାରେ କିଛି ଘଣ୍ଟା ରହି ମନ ପରିବର୍ତ୍ତନ କରୁଥିଲେ । ସେହି ଅନୁଭୂତିକୁ ହିଁ ସମ୍ବଳକରି କବି "ସପ୍ତଶଯ୍ୟାରେ ନିଶୀଥ" କବିତାଟି ରଚନା କରିଥିଲେ । ସେ ଥିଲେ ଗୁଣ ବା କଳାର ପୂଜାରୀ । ସେ କଳା ଓ ସାହିତ୍ୟ କ୍ଷେତ୍ରରେ ଥିଲେ ଜଣେ ଚିନ୍ତାଶୀଳ ଗବେଷକ । ପୂର୍ବତନ କଣଦ ରାଜ୍ୟ ନରସିଂହପୁରରେ ଥିବା ହରିଚନ୍ଦନପୁର ଶାସନ ନିବାସୀ ପ୍ରତିଷ୍ଠିତ ଭାଷାବିତ୍ ଓ ଗବେଷକ ତଥା କବି ଚନ୍ଦ୍ରଧର ମହାପାତ୍ରଙ୍କ ସହିତ ସାକ୍ଷାତ ଓ ଆଲୋଚନା କରିବାକୁ ସେ ଏକାଧିକବାର ବାସଭବନକୁ ଯାଇଥିଲେ ଓ ତାଙ୍କ ସହିତ ସ୍ନେହ ସମ୍ପର୍କ ସଦାସର୍ବଦା ଅତୁଟ ରହିଥିଲା । ଜୀବନ ସାୟାହ୍ନରେ ମଧ୍ୟ କବି ମାନସିଂହ ଏହି ବରେଣ୍ୟ ଭାଷାବିତ୍ ଓ ଗବେଷକଙ୍କୁ ଭାଷା ସହାୟକ, ତଥ୍ୟ ସଂଗ୍ରାହକ ଓ ପ୍ରାବନ୍ଧିକ ଭାବରେ ତାଙ୍କ କଳାକୃତିର ପ୍ରକୃଷ୍ଟ ସଦୁପଯୋଗ କରି ଚାରିଖଣ୍ଡ ପୁସ୍ତକରେ ଓଡ଼ିଆ ଭାଷାରେ "ସଂକ୍ଷିପ୍ତ ଜ୍ଞାନକୋଷ" ଉତ୍କଳ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ସଂସ୍ଥାର ଅଧ୍ୟକ୍ଷ ଭାବରେ ସଂକଳନ କରିଥିଲେ ଓ ତାହା ପ୍ରକାଶିତ ମଧ୍ୟ ହୋଇଥିଲା ।

ଓଡ଼ିଶା ସାହିତ୍ୟରେ ଏହି ବରପୁତ୍ର ଓଡ଼ିଆରେ କବିତା, କାବ୍ୟ, ନାଟକ ନାଟିକା ତଥା ଗୀତିନାଟ୍ୟ, ଭ୍ରମଣ କାହାଣୀ, ଉପନ୍ୟାସ, ପ୍ରବନ୍ଧ ଓ ସମାଲୋଚନା, ଅନୁବାଦ, ସଂକଳନ ଓ ପରିଶେଷରେ ଇଂରାଜୀ ରଚନା ଆକାରରେ ଷାଠିଏରୁ ଅଧିକ ପ୍ରକାଶିତ ପୁସ୍ତକ ତଥା ବହୁ ଅପ୍ରକାଶିତ ଲେଖା ପାଇଁ ଗୌରବ ଅର୍ଜନ କରିଥିଲେ ହେଁ ସେ ତାଙ୍କ ଅନ୍ତରର ନିବିଡ଼ତମ ପ୍ରଦେଶରେ ଥିଲେ ଜଣେ ଉଦାର ହୃଦୟ, ସ୍ୱାଧୀନଚେତା, ଜାତୀୟତା ତଥା ବାସ୍ତବବାଦୀ, ସତ୍ୟବାଦୀ ଓ ସର୍ବୋପରି ଦରଦୀ ଓ ସ୍ନେହୀ ମଣିଷ ।

ମାନସିଂହଙ୍କ କବି ପ୍ରତିଭା ଯେତେବେଳେ ବିକଶିତ ହେଲା ସେତେବେଳେ ସବୁଜ ଗୋଷ୍ଠୀ ନିଜ ଆଦର୍ଶରେ ଅଟଳ ରହି ନୂତନ ସାହିତ୍ୟିକ ଦିଗ୍‌ଦର୍ଶନ ପାଇଁ ତତ୍ପର ଥିଲେ । ସେମାନଙ୍କ ସ୍ୱପ୍ନବିଳାସୀ ଦୃଷ୍ଟିକୋଣରୁ ମାନସିଂହ ତାଙ୍କ "ପରାଧର୍ମୀ" ପ୍ରବନ୍ଧରେ ଆକ୍ଷେପ କରିଛନ୍ତି ଯଥାର୍ଥତା ତଥା ବାସ୍ତବତା ଦୃଷ୍ଟିକୋଣରୁ ସେ ଲେଖିଛନ୍ତି– "ବିଦେଶୀଭାବ ଲୋକଙ୍କୁ ବିଦେଶୀ କରାଏ ନାହିଁ । ବିଦେଶୀ ବେଶୀ ହିଁ ଲୋକଙ୍କୁ ଇତର କରିପକାଏ । ଏ ଦେଶରେ ଯେ, କିଆ ପୋଲାଙ୍ଗ ଫୁଟି ଝଡ଼ିପଡୁଛି, ସେ ଖବର ଏମାନେ ନ ରଖି ସୁମେଲୀ, ଗୋଲାପ, ବେଲଫୁଲ ବାସ୍ନା ହେନାର ଗନ୍ଧ ଆଣି ଆମକୁ ଶୁଙ୍ଘାଇଲେ । ସାଧାରଣ ଝିଅ ନଈରେ ଗାଧୋଇଲାବେଳେ ଛିଣ୍ଡି ପଡ଼ିଥିବା ବାଉହାତର ଲଙ୍ଗାବାଳକୁ ସୁନାଫରୁଆରେ ପୂରାଇ ପାଣିରେ ଭସାଇ ଦେଇ ଅନାଇ ରହିଛି । ସେ ଦୃଶ୍ୟ କବିମାନେ ଦେଖିପାରୁ ନାହାନ୍ତି । ସେମାନେ ସବୁଜ ପରୀର ଦୃଶ୍ୟ ଆମମାନଙ୍କୁ ଦେଖାଉଛନ୍ତି" (ପରଧର୍ମୀ) ।

## କକ୍ଷଚ୍ୟୁତ ତାରକା :

ସବୁଜ ଯୁଗର କବିମାନଙ୍କୁ ଏଥିରେ ସିଧାସଳଖ ଆକ୍ଷେପ କରିଛନ୍ତି କବି ମାନସିଂହ । ଅଧ୍ୟାପକ ଚିନ୍ତାମଣି ବେହେରାଙ୍କ ଭାଷାରେ –"ଏ ଦେଶର ମୂକ ଶିଳାଖଣ୍ଡର ପ୍ରାଣ ସ୍ୱପ୍ନ, ଏ ଦେଶର ଶୃଙ୍ଖଳତାର ପ୍ରାଣ ବାର୍ତ୍ତା, ଏ ଦେଶର ଗୌରବମୟ ମଣିଷର ଇତିହାସର ଆଲେଖ୍ୟ, ଏ ଦେଶର ପ୍ରେମିକ ପ୍ରେମିକାଙ୍କର ବିରହ ଜନିତ ଶଙ୍କା ସଂଶୟ ଓ ଅଶ୍ରୁଭରୀ ପ୍ରାଣସ୍ପନ୍ଦନ କେବଳ ଏ ଦେଶର ନୁହେଁ, ସର୍ବଦେଶୀୟ, ସର୍ବକାଳୀନ ଜଣେ ସାଧାରଣ ମଣିଷର ଅନୁଭୂତି ଓ ହୃଦୟବେଗ କବି ମାନସିଂହଙ୍କର ସୃଷ୍ଟିରେ ଯେପରି ଲିପିବଦ୍ଧ ସବୁଜ ଯୁଗର କାବ୍ୟ କବିତାରେ ତା'ର ପଟାନ୍ତର ଦୁର୍ଲଭ । ତେଣୁ ମାନସିଂହ ସବୁଜ ଯୁଗର କକ୍ଷଚ୍ୟୁତ ତାରକା କହିଲେ ଅଧିକ ଯୁକ୍ତି ଯୁକ୍ତ ହେବ । ନିଜସ୍ୱ ଚିନ୍ତା ଚେତନାରେ ସେ ଯେଉଁ ସୃଷ୍ଟି କୋଣାର୍କ ନିର୍ମାଣ କରିଯାଇଛନ୍ତିତା'ର ପଟାନ୍ତର ନାହିଁ । ସେଥିପାଇଁ ତାଙ୍କୁ କୌଣସି ଗୋଷ୍ଠୀ ବା ଦଳର ବୋଲି କହିବା କେତେ ଦୂର ଯୁକ୍ତି ଯୁକ୍ତ ସାହିତ୍ୟିକ ଗୋଷ୍ଠୀର ହିଁ ବିଷୟ । ସେ ନିଜେ ଏକ ଯୁଗ ବା ଗୋଷ୍ଠୀ । ସେ ପ୍ରଭାବିତ କରିଛନ୍ତି ଅନ୍ୟମାନଙ୍କୁ ହେଲେ କାହା ଦ୍ୱାରା ପ୍ରଭାବିତ ହୋଇ ନାହାନ୍ତି" ।

ଅଧ୍ୟାପକ ଚିନ୍ତାମଣି ବେହେରା "ଓଡ଼ିଆ ସାହିତ୍ୟରେ ମାୟାଧର ମାନସିଂହ" ଶୀର୍ଷକ ପ୍ରବନ୍ଧରେ ପୁନଶ୍ଚ ଉଲ୍ଲେଖ କରିଛନ୍ତି–

"ପୁଣି ଅତୀନ୍ଦ୍ରିୟ ଜଗତର ନିବିଡ଼ ରହସ୍ୟାନୁଭୂତି କବି ସ୍ୱ... ପ୍ରାଣରେ ଅନୁଭବ କରିଥିଲେ ହେଁ ଧରଣୀର ଜୀବନ ଓ ଜଗତ ପ୍ର... ଶିଳ୍ପୀପ୍ରାଣର ସହଜାତ ସହାନୁଭୂତି ଓ ମଣିଷର ଦୁଃଖ ବିପାଦ ପ୍ର... ଅନ୍ତରର ସମବେଦନା ନିଜ ଶିଳ୍ପ ସୃଷ୍ଟିରେ ସର୍ବଦା ସେ ଅକ୍ଷୁ... ରଖିଛନ୍ତି । ଏହି ମୌଳିକ ଶିଳ୍ପଧର୍ମ କୌଣସି ପ୍ରବୃତ୍ତ... ସାମୟିକ ଉତ୍ତାପ ଉତ୍ତେଜନାକୁ ଆଶ୍ରୟ ନ କରି ଶିଳ୍ପୀ ... ସ୍ୱରଲାଳିତ୍ୟ ଓ କମନୀୟତା ମଧ୍ୟରେ ହିଁ ସର୍ବଦା ଆତ୍ମପ୍ରକା... କରିଛି । ବିଶ୍ୱର ଦଳିତ ଓ ଲାଞ୍ଛିତ ମାନବପ୍ରତି ... କରୁଣାସିକ୍ତ ସହାନୁଭୂତି ମାନସିଂହଙ୍କର ବହୁ କବିତା, କାବ୍ୟ ... ନାଟକ ନାଟିକା ମଧ୍ୟରେ ପ୍ରକାଶିତ । ସେ ଦିନରେ କବି... "ଅକ୍ଷତ","ମାଟିବାଣୀ", "ଜୀବନଚିତା" ଓ "..." ପ୍ରଭୃ... କବିତାଗୁଚ୍ଛ, "ହେମା" ଓ "କମଳାୟନ" କାବ୍ୟ ଏବଂ "..." ନାଟକରେ ବେଦନା ବିଦ୍ଧ ମାନବାତ୍ମାର ... ସଜଳା–ଅଶ୍ରୁସଙ୍ଗୀତ ଆମେ ଶୁଣିଥାଉ । କବିଙ୍କର "... ଜୀବର ବିଳାପ" ଶୀର୍ଷକ କବିତାଗୁଚ୍ଛ", "ଅନୁଢ଼ା", "ତୀର୍ଥଯାତ୍ରୀ" ଓ "ଅଶ୍ରୁର ହିସାବ" ପ୍ରଭୃତି କବିତାଗୁଡ଼ିକରେ ଏ ବେଦନାର ମୂର୍ଚ୍ଛନା ବଳିଷ୍ଠ ଓ ସୁଦୂର ପ୍ରସାରୀ । ପୁଣି ଏ ସବୁ କବିତାରେ ଆମେ ଦେଖୁ ଏ ଯୁଗର ସୃଷ୍ଟି ବିଶୃଙ୍ଖଳାରେ ଶିଳ୍ପୀପ୍ରାଣ କେବ... ବିଚଳିତ ନ ହୋଇ, ସଂସାରର ସମସ୍ତ ଅନ୍ୟାୟ ବୈଷମ୍ୟକୁ ନିଃଶେଷ କରିବା ପାଇଁ ମନୁଷ୍ୟକୁ ଆତ୍ମ ସଚେତନ ଓ ସଂଗ୍ରାମୀ ହେବାକୁ ମଧ୍ୟ ନିର୍ଦ୍ଦେଶ ପ୍ରଦାନ କରିଛି । କବି ନିଜେ ମଧ୍ୟ ... ଆତ୍ମଶକ୍ତିରେ ମହୀୟାନ୍ ହେବାକୁ ସ୍ରଷ୍ଟାଙ୍କ ନିକଟରେ ନିବେଦ... ଜଣାଇ କହିଛନ୍ତି, "ଜଗତରୁ ଦୁଃଖ ମୁହିଁ ପୋଛି ଦେବିରେ, ଦେଖି... ଆନନ୍ଦରେଖା ନିଖିଳ ମୁଖରେ", ଅଥବା ସେ ଗାଇଛନ୍ତି, "ଜୀବନ... ଜନ୍ମି ଗନ୍ଧ ମୋର ଦେଇ, ମେଣ୍ଟିବ ମାନବ ଦୁଃଖ ମୁଁ ... ଦେଇ" ।

କେତେକ ସାହିତ୍ୟିକ ପ୍ରକାଶ୍ୟରେ ମାନସିଂହଙ୍କ କୁତ୍ସାରଟନା କରିଥିଲେ । ବହିଲେଖି ଶ୍ରୀରାମଚନ୍ଦ୍ର ଭବନରେ ଉଦ୍‌ଘାଟ... ଉତ୍ସବ ମଧ୍ୟ କଲେ । ଏ ହେଉଛି "ଓଡ଼ିଆ ସାହିତ୍ୟର ଇତିହାସ" ଲେଖାହେବା ପରର ଘଟନା । ମାନସିଂହ ସେହି କୁତ୍ସାପୂର୍ଣ୍ଣ ବହିରୁ ଖଣ୍ଡିଏ ଆଣି ହେମଲତାଙ୍କୁ ପଢ଼ିବାକୁ ଦେଇଥିଲେ । କବିଙ୍କ ମନରେ ଏଥିରେ ଆଘାତ ଲାଗିଥିଲା, କିନ୍ତୁ ବ୍ୟକ୍ତିଗତ ଭାବେ ... ସବୁ ନେଇ କାହାପ୍ରତି ତାଙ୍କର ବିଦ୍ୱେଷ ଭାବ ନଥିଲା ।

ଡକ୍ଟର ମାୟାଧର ମାନସିଂହ ବୋଧେ ଓଡ଼ିଶାରେ ପ୍ରଥମ ... ସାହିତ୍ୟରେ ରିସର୍ଚ୍ଚ କରି ଡକ୍ଟରେଟ୍ ପାଇଥିଲେ । ମାତ୍ର ... ବାରମ୍ବାର ବେକାର ଜୀବନ ଯାପନ କରିବାକୁ ... ହୋଇଥିଲେ । ସହାୟ ସମ୍ବଳହୀନ କବି ନିଦାରୁଣ ମାନସିକ ଅବସାଦଗ୍ରସ୍ତ ହୋଇ ବେଳେ ବେଳେ ଆତ୍ମଘାତୀ ହେବାକୁ ଚେଷ୍ଟା ... ଥିଲେ । ସେଇ ସମୟରେ ଗୋଟିଏ କବିତା ସେ ତାଙ୍କ ପତ୍ନୀ... ଉଦ୍ଦେଶ୍ୟରେ ଲେଖିଥିଲେ । କବିତାଟି ପ୍ରକାଶିତ ହୋଇ ନଥି...

ଠ କରି ଯାଇଥିଲା । ସେଥିରୁ କେତେପଦ ଶ୍ରୀମତୀ ହେମଲତା ମାନସିଂହଙ୍କ ଲିଖିତ ପ୍ରବନ୍ଧ "ପ୍ରିୟ ପରମ"ରୁ ନିମ୍ନରେ ଉଦ୍ଧୃତ ହେଲା–

ବିଦାୟ ଦିଅ ଦିଅ ଗୋ
ମୃତ୍ୟୁ ବରିବି ମୁଁ
ତୁମରେ ତେବେ ଆଜି
ଏ ଜୀବନ ନୁହେଁ ମହନୀୟ' ଗୋ
ପ୍ରଣୟ ପରିହାସ
ଜ୍ୟୋତ୍ସ୍ନା ରାତେ ରାସ
ବିଫଳ ହେଲା ସବୁ ସହି ଗୋ !
ଥାଉ କନକ ମାଥେ
ସୋହାଗ ସିନ୍ଦୁର
ଥାଉ ଏ ସୁନା ହାତେ,
ସୁର୍ଣ୍ଣକଙ୍କଣ
ଆସିବୁ ପ୍ରତିନିଶି
ମୃତ୍ୟୁ ଭେଦି ନିତି
ମରଣ ହେବ ବରଣୀୟ ଗୋ !

କବିଙ୍କ ଜନ୍ମସ୍ଥଳୀ ପୁରୁଣା ନନ୍ଦଲା ଗାଆଁ ୧୯୫୩ ଭୟଙ୍କର ତୋଫାନରେ ଧ୍ୱଂସ ହୋଇ ଗଲା । ସେହି ତୋଫାନରେ ତାଙ୍କର ଅନେକ ପାଣ୍ଡୁଲିପି ଆକାରରେ ଥିବା ଅପ୍ରକାଶିତ ବହି ନଷ୍ଟ ହୋଇଗଲା । ସେମାନଙ୍କ ମଧ୍ୟରେ "ଖାରବେଳ" ନାଟକ ଅନ୍ୟତମ । ସେହି ନାଟକରୁ ନାମଗୁଡ଼ିକ ଉଠାଇ ଦେଇଥିଲେ ତାହା ହୋଇଥାନ୍ତା ଏକ ଐତିହାସିକ ଉପନ୍ୟାସ । ଉପନ୍ୟାସ ଆକାରରେ ଲେଖିବାକୁ କବି ତଦୀୟ ପତ୍ନୀଙ୍କୁ ପାଣ୍ଡୁଲିପିଟି ଦେଇଥିଲେ । କବିପତ୍ନୀ ଗ୍ରାମସ୍ଥ ଘରେ ତାହା ଛାଡ଼ିଦେଇ ଆସିଥିଲେ । କବିଙ୍କ ନିଜ ଜ୍ୟେଷ୍ଠ ତାତ ପୁତ୍ର ଭାଇ ବଳରାମ ଓ ସେ ଧର୍ମକାମୀ ପିତୃବ୍ୟଙ୍କର ମୃତ୍ୟୁ ହେଲା । ଏହାକୁ ଉଦ୍ଦେଶ୍ୟକରି କବି "ନଷ୍ଟପଲ୍ଲୀ ରଚନା କରିଯାଇଅଛନ୍ତି ।

## ମାନସିଂହଙ୍କ ଦେଶପ୍ରୀତି :

ଓଡ଼ିଶା ମନ୍ଦିର ସମୂହର ଶିଳ୍ପ ନୈପୁଣ୍ୟ କିପରି ବାହାରେ ପ୍ରଚାରିତ ହେବ ସେଥିପାଇଁ ବାରମ୍ବାର ଚିଠି ଲେଖି ଡକ୍ଟର ମାନସିଂହ ଡକ୍ଟର ଷ୍ଟେଲ୍‌ସ୍ କ୍ରାମ୍ବ୍ରୀଙ୍କୁ ଦୁଇ ତିନିଥର ଓଡ଼ିଶା ଆଣାଇଥିଲେ । କ୍ରାମ୍ବ୍ରୀ ଥିଲେ କଳା ସମାଲୋଚକ । ତାଙ୍କୁ ସାଥୀରେ ଧରି ମନ୍ଦିରମାନ ବୁଲାଇ ଶେଷରେ ତାଙ୍କ ଦ୍ୱାରା ଏହି ବିଷୟରେ ବହି ଲେଖାଇଥିଲେ, କିପରି ଓଡ଼ିଶା ସରକାରଙ୍କ ଦ୍ୱାରା ସେ ବହି ପ୍ରକାଶିତ ହେବ କବି ବହୁତ ଚେଷ୍ଟା କରିଛନ୍ତି । ରୋଗଶଯ୍ୟାରେ ଥାଇ ମଧ୍ୟ ବହି ପ୍ରକାଶ ସମ୍ବନ୍ଧରେ ସେ ବହୁତ ଉଦ୍‌ବିଗ୍ନ ଥିଲେ ।

ଓଡ଼ିଶୀ ନୃତ୍ୟ କିପରି ଅନ୍ୟାନ୍ୟ ନୃତ୍ୟପରି ମର୍ଯ୍ୟାଦା ପାଇବ ସେଥିପାଇଁ ସେ ଥିଲେ ପ୍ରଚେଷ୍ଟ । ଏ ନୃତ୍ୟଶିକ୍ଷା ପାଇଁ ଇନ୍ଦ୍ରାଣୀ ରହମାନଙ୍କ ଗୁରୁ ଠିକ୍ କରିବାଠାରୁ ରହିବାଯାଏ ସବୁ ବନ୍ଦୋବସ୍ତ ସେ କରିଥିଲେ ।

୧୯୩୮-୩୯ ମସିହାରେ ବିଲାତରେ ଥିବାବେଳେ ତାଳପତ୍ର ପୋଥିରୁ ଚିତ୍ରରୁ ସ୍ଲାଇଡ୍ କରାଇ କଳା ସମ୍ବନ୍ଧରେ ବାହାର ଲୋକେ କିପରି ଜାଣିବେ, ମାନସିଂହ ପ୍ରଚାର କରିଛନ୍ତି ।

ବିଦେଶୀ ଲୁଗା ବ୍ୟବହାର ଯୁଗରେ ମାନସିଂହଙ୍କ ନିର୍ଦ୍ଦେଶରେ ତାଙ୍କ ପରିବାର ବର୍ଗ ତନ୍ତଲୁଗା ହିଁ ବ୍ୟବହାର କରୁଥିଲେ । ଘର ବାହାରେ ମନପ୍ରାଣରେ ସେ ଥିଲେ ଓଡ଼ିଆ ଓ ଚଖାବଢ଼ା ଓ ଖାଇବା ପିଇବାରେ ବି ସେଇଆ । କବିଙ୍କର ବଡ଼ପୁଅ ପିତାଙ୍କ ବନ୍ଧୁ ଡକ୍ଟର ଭିଞ୍ଚରଙ୍କ ସହିତ ପରାମର୍ଶ କରି ଆମେରିକାରେ ପ୍ରଫେସର୍ ପଦବୀଟିଏ ଠିକ୍ କଲା ଓ ବାରମ୍ବାର ଚିଠି ଲେଖିଲା । ମାତ୍ର ପିତା ଓଡ଼ିଶା ମାଟି ଛାଡ଼ି ଗଲେ ନାହିଁ ।

ମାନସିଂହଙ୍କ ପୁଅମାନେ ଥାଆନ୍ତି ବିଦେଶରେ । ଘରେ ମାତ୍ର ଅଢ଼େଇ ତିନି ମାସର ଛୋଟ ନାତିଟିଏ ଥାଏ । ମାନସିଂହ ଅସୁସ୍ଥ ହୋଇ ଡାକ୍ତରଖାନାରେ ଥାଆନ୍ତି । ଶ୍ରୀମତୀ ମାନସିଂହଙ୍କୁ ବାହାର ଭିତର ସବୁ ବୁଝିବାକୁ ପଡୁଥାଏ । ତଥାପି ମାନସିଂହ କହିଲେ, କଲିକତାରୁ ଆସିଥିବା ବ୍ରାହ୍ମ ବନ୍ଧୁଙ୍କୁ ନିମନ୍ତ୍ରଣ କରିବାକୁ । ଅନ୍ୟାନ୍ୟ ଜିନିଷ ଭିତରେ ରସାବଳି କରିବାକୁ ବରାଦ୍ ହୋଇଥାଏ । ଚିକିତ୍ସକମାନେ ତାଙ୍କୁ ଲୁଣ ଖାଇବାକୁ ମନା କରିଥାଆନ୍ତି । ରାତିରେ ମାନସିଂହ ରସାବଳି ମନବୋଧ କରି ଖାଇଲେ । ତାହା ଥିଲା ତାଙ୍କର ଏ ଜନ୍ମର ଶେଷ ଖାଇବା ।

ଶେଷ ବୟସରେ ସେ ବଡ଼ ଚିନ୍ତିତ ଥିଲେ "ଓଡ଼ିଆ ଜ୍ଞାନକୋଷ" ପାଇଁ । ବାରମ୍ବାର ସେହି ବିଷୟରେ କହୁଥିଲେ ପତ୍ନୀଙ୍କୁ ।"ଦେଖ, ଏତେ କଷ୍ଟ କରି ପ୍ରବନ୍ଧ ଲେଖା କରେଇଲି, ଚନ୍ଦ୍ରମୋହନ ମହାରଣା କିମ୍ବା ଆଉ କାହାର ଫଟୋ କିପରି ସଂଗ୍ରହ କରାହୋଇଥିଲା । କହି ଅତିଶୟ ମନକଷ୍ଟ କରୁଥିଲେ । ଜ୍ଞାନକୋଷ ଛାପା ହୋଇଥିଲେ ହୋଇଯାଇଥାନ୍ତା । ନଷ୍ଟ ହୋଇଗଲା । ସ୍ୱଗତୋକ୍ତି କରୁଥିଲେ । ସବୁ ଭାଷାର ଜ୍ଞାନକୋଷ ଅଛି । ଆମର ନାହିଁ । ସାନ୍ତ୍ୱନାଅଛି ବାହା ହୋଇନଥାଏ । ପଦେ ଟା ବିଷୟରେ କିଛି କହିନାହାନ୍ତି । ବରଂ ଆତ୍ମପ୍ରସାଦ ଅନୁଭବ କରୁଥିଲେ ବୌଦ୍ଧ ବିହାର ଜମି ସରକାରଙ୍କଠାରୁ ବୁଦ୍ଧିଷ୍ଟ ସୋସାଇଟିକୁ ହସ୍ତାନ୍ତର କରିବା ପାଇଁ । ଏହା ତାଙ୍କର ଶେଷକାର୍ଯ୍ୟ । ତାଙ୍କର ଶେଷ ବାଣୀ ହେଲା "ମୋ କାମ ସରିଗଲା" ।

କବି ମାନସିଂହ "ଗୋପବନ୍ଧୁ" ଓ "ଚନ୍ଦ୍ରଶେଖର" କବିତାରେ ଗୋପବନ୍ଧୁଙ୍କୁ "ଦରିଦ୍ରବନ୍ଧୁ" ଓ ଚନ୍ଦ୍ରଶେଖରଙ୍କୁ "ଜ୍ଞାନଯୋଗୀ ତପସ୍ୱୀ" ଭାବେ ବର୍ଣ୍ଣନା କରିଛନ୍ତି ।

## ନୂଆ ପୀଢ଼ି ପାଇଁ ପ୍ରେରଣା :

ମାନସିଂହଙ୍କ ଚେତନାରେ ଯେଉଁମାନେ ବଡ଼ ହୋଇଛନ୍ତି ସେମାନଙ୍କ ମୂଳମନ୍ତ୍ର ସତ୍ୟର ଅନୁସନ୍ଧାନ, ସଂସ୍କୃତି ସଚେତନତା ଓ କର୍ତ୍ତବ୍ୟନିଷ୍ଠା । ଆଉ ମାନସିଂହ ମାନସ ଜାତିର ଶରୀରକୁ କେବଳ ଦେଖୁ ନଥିଲା । ସେ ଜାତିର ପ୍ରାଣକୁ ଦେଖୁଥିଲେ ।

"ସେଦିନର କବିତା" ସଂକଳନରେ " ମାଟିର ସହୀଦ୍" କବିତାରେ କବି ଓଡ଼ିଆ କୃଷକର ଦୁରାବସ୍ଥା ସହିତ ମାଟି ମାଆର ରକ୍ଷଣାବେକ୍ଷଣ ପାଇଁ ଉତ୍ସର୍ଗ ପ୍ରାଣର ବ୍ୟଥା ସମ୍ପର୍କରେ ବର୍ଣ୍ଣନା କରିଛନ୍ତି । "ଚଳିଆ ଜୀବର ବିଳାପ" କବିତା ମୂଳରେ କବି ରିକ୍ସାବାଲା, ମଜଦୁର, କୃଷକ, ବଢ଼େଇ, କିରାଣି, କଳସେବକ ଓ

ସ୍କୁଲମାଷ୍ଟର ଆଦିଙ୍କର କରୁଣ ଚିତ୍ର ଦେବା ସଙ୍ଗେ ସଙ୍ଗେ ସେମାନେ ସମାଜରେ କିପରି ଅବହେଳିତ ଅବସ୍ଥାରେ ଅଛନ୍ତି ଏକ ମର୍ମଭେଦୀ ଚିତ୍ର "କବି କହେ" କବିତାରେ କବି ସେମାନଙ୍କୁ ଏକାଠି ହେବାର ଆହ୍ୱାନ ଦେଇ ଏକ ନୂତନ ସମାଜ ଗଠନର ପରିକଳ୍ପନା କରିଛନ୍ତି ଯେଉଁଠାରେ "ସକଳେ ଯହିଁ ସେବକ ଖାଲି, ହାକିମ ନାହିଁ ସକଳେ ଭାଇ।

"ସ୍କୁଲରେ ସ୍କୁଲ" କବିତାରେ ମଧ୍ୟ ମହାଭାରତୀୟ ଚେତନା ଦୃଷ୍ଟାନ୍ତ ଯେପରି–

ସନ୍ତାନ ଆମେ ଏକା ମାଆର
ରଖିବା ମହତ ସନ୍ତିଁଏ ତାର"

କବିଙ୍କ ରଚିତ କେତୋଟି ପୁସ୍ତକର ସଂକ୍ଷିପ୍ତ ମର୍ମ–

ବୁଦ୍ଧ– ପ୍ରଥମେ ମାନବ। ତା'ପରେ ତାର ଧର୍ମ। ବିଶ୍ୱର ବିଭିନ୍ନ ଧର୍ମ ପରସ୍ପରକୁ ହୀନଦୃଷ୍ଟିରେ ଦେଖେ, ଅନ୍ୟର ବିନାଶ ପାଇଁ ଚେଷ୍ଟା କରେ। ଧର୍ମର ଘଟାଟୋପ ମଧ୍ୟରେ ମାନବ ମାନବିକତାକୁ ଭୁଲିଯାଇ ନୃଶଂସତାରେ ଜଡ଼ୀଭୂତ ହୋଇ ଧର୍ମର ମୌଳିକ ଚିନ୍ତାକୁ ଭୁଲିଯାଏ।

ପଶ୍ଚିମ ପଥିକ–ଜାହାଜରେ କୁଲାବିକାଳିଙ୍କ ପ୍ରତି ଦରଦ ଆଣି କବି କହିଲେ–"ମୋ ଦେଶ ସ୍ୱାଧୀନ ହୋଇଥିଲେ ଏମାନେ କୁଲାବିକା ନହୋଇ ଭଦ୍ରବଂଶିକ ହୋଇଥାଆନ୍ତେ।

## ଶିକ୍ଷାବିତ୍ ଗାଥା :

ଡକ୍ଟର ମାନସିଂହଙ୍କର ଏକ ଅଭିନବ ସୃଷ୍ଟି। ଏହା ଏକାଧାରରେ କବିଙ୍କ ଜୀବନୀ ଓ ସମାଲୋଚନା। ଏଥିରେ ଜାତୀୟ ଜୀବନରେ ଶିକ୍ଷକର ଭୂମିକା ସହିତ ଆମ ଜାତିର ଶିକ୍ଷାକ୍ଷେତ୍ରରେ ବହୁ ଦୋଷ ଦୁର୍ବଳତାକୁ ଦେଖାଇ ତା'ର ସମାଧାନର ବାଟ ମଧ୍ୟ ଦେଖାଇଛନ୍ତି। ଆମେ ଶିକ୍ଷକଙ୍କୁ ଯେ ପର୍ଯ୍ୟନ୍ତ ସମ୍ମାନ ଦେବା ପାଇଁ ପ୍ରସ୍ତୁତ ନହୋଇଛୁ, ସେ ପର୍ଯ୍ୟନ୍ତ ଆମ ଜାତୀୟ ଚରିତ୍ରର ମୂଳପତନ ଦୁର୍ବଳ ରହିବ ହିଁ ରହିବ।

## ଓଡ଼ିଆ ଭାଷାର ଇତିହାସ :

ଏହା ଡକ୍ଟର ମାୟାଧର ମାନସିଂହଙ୍କର ଏକ ଅମର କୀର୍ତ୍ତି। ଏହାକୁ ଓଡ଼ିଆ ଜାତିର ଆସାର ଇତିହାସ କରି ଗଢ଼ି ତୋଳିବାକୁ କବି ମୂଳରୁ ମନସ୍ଥ କରିଥିଲେ।

ଛାତ୍ରବସ୍ଥା ସମ୍ପର୍କରେ ସୂଚନା ଦେବାକୁ ଯାଇ ମାନସିଂହ ତାଙ୍କର "ଶିକ୍ଷାବିତ୍‌ର ଗାଥା"ରେ କହିଛନ୍ତି, "ମୁଁ ମାଟ୍ରିକ୍ୟୁଲେଶନ୍ ପରୀକ୍ଷାଟା ବି ଟପିପାରିବି ଏ ଭରସା ମୋର ନଥିଲା। ଅଙ୍କ ସରସ୍ୱତୀଙ୍କର ଏ ଅଧମ ଉପରେ ନିରତିଶୟ କରୁଣା ଯୋଗୁଁ ମାଟ୍ରିକ୍ୟୁଲେଶନ୍ ଲୌହକବାଟ ପାରହୋଇ ତା ଆରପଟେ ଥିବା କଲେଜ– ବିଦ୍ୟାର ସୌଖୀନ ଉଦ୍ୟାନରେ ବୁଲିପାରିବାର କଳ୍ପନା ଏଇ ହତଭାଗ୍ୟ ଜୀବର ସ୍ୱପ୍ନର ବିଷୟ ମଧ୍ୟ କେବେହେଲେ ନଥିଲା। କିନ୍ତୁ ସମସ୍ତ ପରଜୀବନର ଘଟଣାବଳୀ ପରି। ସେତେବେଳେ ଜୀବନର ପ୍ରାକ୍ କାଳରେ ହିଁ, ଯାହା ପୂର୍ବରୁ କେବେ କଳ୍ପନା କରା ଯାଇନଥିଲା, ତାହାହିଁ ଆଘଟନ–ଘଟନ ଶକ୍ତି... କାର୍ଯ୍ୟରେ ଘଟିଲା। ମୋର ନିଜର ଆଶଙ୍କାନୁଯାୟୀ, ମୁଁ ଫେଲ୍... ହେଲିନି, ବରଂ ପାସ୍ କଲି ଫାଷ୍ଟ ଡିଭିଜନରେ ଓ ତା ପୁ... ଡିଭିଜିନାଲ ସରକାରୀ ବୃତ୍ତିସହିତ। ମୁଁ ବାଧ୍ୟହେ... ସେତେବେଳର କଳ୍ପିତ ସ୍ୱର୍ଗ କଟକ ନଗରକୁ ଆସିଲି କଲେଜ... ପଢ଼ିବାକୁ ଓ ପରେ ଆହୁରି ବୃତ୍ତି ପାଇବା ଯୋଗୁଁ ଏକପ୍ରକା... ବାଧ୍ୟହୋଇ ଉପରକୁ ଉପର ଗ୍ଲିଲି।" ଉତ୍କଳମଣି ଗୋପବନ୍ଧୁ... ମୃତ୍ୟୁରେ ଉତ୍କଳ ସାହିତ୍ୟ ପତ୍ରିକାରେ ମାନସିଂହଙ୍କ "ଗୋ ପର୍ଣ୍ଣ"... ସମାଜରେ "ଗୋପ ପ୍ରୟାଣ" ଓ ରେଭେନ୍‌ସା କଲେଜ... ମାଗାଜିନ୍‌ରେ ତାଙ୍କ ସମ୍ପର୍କରେ ଏକ ଇଂରାଜୀ ପ୍ରବନ୍ଧ ପ୍ରକାଶିତ... ହେବା ଫଳରେ ମାନସିଂହଙ୍କ ଜୀବନରେ ଡେପୁଟି ମାଜିଷ୍ଟ୍ରେ... ହେବା ନୋହିଲା।

ଜୀବନରେ ସେ ବୌଦ୍ଧ ଧର୍ମର ଗୌତମଙ୍କ କାନ୍ତି ଓ... ଆଦର୍ଶରେ ଅନୁପ୍ରାଣିତ ହୋଇ ବୌଦ୍ଧଧର୍ମ ଗ୍ରହଣ କରିଥିଲେ। ତାଙ୍କରି ବଳିଷ୍ଠ ପ୍ରଚେଷ୍ଟାରେ ହିଁ ଭୁବନେଶ୍ୱରରେ "ବୁଦ୍ଧ ବିହାର" ପ୍ରତିଷ୍ଠା ସମ୍ଭବ ହୋଇପାରିଲା। ଡକ୍ଟର ମାନସିଂହ ଯେଉଁଠି... ଯାଉଥିଲେ ଆନ୍ତରିକ, ଅନାବିଳ ହସର ବୁରୁଲା ବାନ୍ଧି ଯାଉଥିଲେ। ଯେଉଁଠି ବସୁଥିଲେ, ଛିଡ଼ା ହେଉଥିଲେ, କଥା କହୁଥିଲେ ଆଉଟିଏ... ହସରୁ କିଛି ଫୋପାଡ଼ି ଦେଉଥିଲେ। ସେଇ ହସ–ଫୁଲର... ପାଖୁଡ଼ା ପରିବେଶକୁ ବର୍ଣ୍ଣାଢ୍ୟ ଓ ସୁରଭିତ କରି ରଖୁଥିଲା।

## ମାନସିଂହ କବିତା ସମ୍ଭାର :

ପ୍ରଥମ ପ୍ରକାଶିତ କବିତା–"କୋଣାର୍କ"। ଏହା ପ୍ରଥମେ... ଛଦ୍ମନାମରେ "ବାରୁଣୀ" ଆଷାଢ଼ (୧୯୨୬) ଜୁନ, ୧୯୨... ସଂଖ୍ୟାରେ ପ୍ରକାଶିତ।

ପ୍ରଥମ ପ୍ରକାଶିତ ପୁସ୍ତକ–"ରାଜକବି" ପ୍ରଥମ... ପ୍ରକାଶ–୧୯୨୮–କଟକ ସତ୍ୟବାଦୀ ପ୍ରେସ୍‌ରେ ମୁଦ୍ରିତ ଓ... "ପ୍ରଗତିସଂଘ" ଦ୍ୱାରା ପ୍ରକାଶିତ।

କବିତା ପୁସ୍ତକ–ଧୂପ, ହେମଶସ୍ୟ, ହେମପୁଷ୍ପ, କୋଣାର୍କ, ପ୍ରେମପୁଷ୍ପ, ପ୍ରେମଶସ୍ୟ, ଅକ୍ଷତ, ମାଟିବାଣୀ, ଜୀବନଚିତା, ବାପୁତର୍ପଣ, ପୁଷ, ସିନ୍ଧୁ ଓ ବିନ୍ଦୁ, ସ୍ୱରାଜ୍ୟାଶ୍ରମ, କିଶୋର କବିତା, ଗୀତରେଣୁ।

କାବ୍ୟ–ଉପେକ୍ଷିତା, ନିକ୍ୱଣ, ସାଧବଝିଅ, ଶୁଭଦୃଷ୍ଟି, ହେମ... କମଳାୟନ, ମାନସିଂହ ଚୟନ–୧ମ ଖଣ୍ଡ।

ମାନସିଂହ ଚୟନ–୨ୟ ଖଣ୍ଡ, ମାନସିଂହ ଗ୍ରନ୍ଥାବଳୀ–୧ମ ଭାଗ, ମାନସିଂହ ଗ୍ରନ୍ଥାବଳୀ–୨ୟ ଭାଗ।

ନାଟକ, ନାଟିକା, ଗୀତିନାଟ୍ୟ–ରାଜକବି ଉପେନ୍ଦ୍ର, ପୁଷ୍ପିତ... ପୂଜାରିଣୀ, ନଷ୍ଟ ନୀଡ଼, ବାରବାଟୀ, ବୁଦ୍ଧ, ଶାସନଚକ୍ର, ଦୁର୍ଭିକ୍ଷ... ବୁଦ୍ବୁଦୀ, ପୁଷ୍ପାଭିନୟ।

ଉପନ୍ୟାସ–ଅନ୍ୱେଷଣ।

ପ୍ରବନ୍ଧ ଓ ସମାଲୋଚନା–କବି ଓ କବିତା, ଜୀବନ ପଥେ... ଓଡ଼ିଶା ସାମ୍ରାଜ୍ୟ, ସାହିତ୍ୟ ପ୍ରଭା, ଶିକ୍ଷା ଶିକ୍ଷକ ଓ ଶିକ୍ଷାୟତନ...

...ମହାକାବ୍ୟ ଶାରଳାଦାସ, ଶିକ୍ଷାବିତ୍‌ର ଗାଥା, ଜୀବନୀ ଓ ...ପ୍ରସ୍ତୁତି ଫକୀର ମୋହନ, ଗୀତା ମହାତ୍ମ୍ୟ, ସାର୍ବଜନୀନ ...ଓଡ଼ିଆ ସାହିତ୍ୟର ଇତିହାସ ।

ଅନୁବାଦ–ପ୍ରମାଥିନର ରୋମାଞ୍ଚକର କାହାଣୀ, ଗୁରୁ ନାନକ ...ଣୀ ଓ ରଚନା, ଧର୍ମପଦ ଟୀକା, ଶ୍ରୀମଦ୍ ଭାଗବତ୍ ...ଗୀତା ।

ସଙ୍କଳନ–ମହତ୍ ବାଣୀ ।

ଇଂରାଜୀ ରଚନା– Citizen Education, History of Oriya Literature, Dreams in Education, Kalidas and Shakespear, Ripples of Mahanadi. The Saga of the Land of Lord Jagannath.

ବି: ଏ: ପଢ଼ିବାବେଳେ ପୁଷ୍ପିତା ନାଟିକା ପ୍ରକାଶନର ପୂର୍ବରୁ ପ୍ରକାଶିତ ପ୍ରବନ୍ଧ ଓ କବିତା ବାରବାଟୀ, କବିର ନିମନ୍ତ୍ରଣ, ପ୍ରାକୃତ ସମ୍ଭାଷଣ, ବଂଶୀର ଡାକ, ତରୁଣ କବିର ଆଶା, ଗୋପ ଦର୍ପଣ, ରୂପସୀର ପୂଜା, ଉପେକ୍ଷିତା, ନିଦ୍ରିତ ଭଗବାନ, ପ୍ରଣୟୀ, ପ୍ରେମର ପରିଣାମ, ଦକ୍ଷିଣା ପ୍ରତି, ମହାନଦୀରେ ଜ୍ୟୋତ୍ସ୍ନାବିହାର, ରେଙ୍ଗୁନ୍ ଚିଠି, ଯଥାସ୍ଥାନ ।

ଦୁଇଟି ଅପ୍ରକାଶିତ ଲେଖା–ବିଶ୍ବ ମିଳନ ଓ ଲେଖକ ସମ୍ମିଳନ, ଓଡ଼ିଆ ଏନସାଇକ୍ଲୋପେଡ଼ିଆର ଜନ୍ମ ଓ ମୃତ୍ୟୁ ।

---

୪୩୮–ଶହିଦ୍ ନଗର,
ଭୁବନେଶ୍ୱର ।



ବ୍ରହ୍ମପୁରଠାରେ ଆୟୋଜିତ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଜନ୍ମ ଶତବାର୍ଷିକୀ ଉତ୍ସବରେ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କର ଅଭିଭାଷଣ ଦେଉଛନ୍ତି ।

# ବାଳ ଅପରାଧର ପାରିବାରିକ ପ୍ରତିକାର

ଶ୍ରୀ ଉଦୟନାଥ ରଥ

ବାଳ ଅପରାଧକୁ ଲୋକମାନେ ସବୁବେଳେ ଖାମଖିଆଲି ଭାବନ୍ତି ଓ କେତେକ ପିତାମାତା ବାଳ–ଅପରାଧରେ ଆନନ୍ଦ ଉପଭୋଗ କରି ସେମାନଙ୍କୁ ବାହା ବାହା କରନ୍ତି । ଏ ପ୍ରକାର ପ୍ରୋତ୍ସାହନ ଦେବା କେତେ ଯେ ଭୟାବହ ତାହା ସେମାନେ ଚିନ୍ତା କରି ପାରନ୍ତିନି । ଆମ ଓଡ଼ିଶାରେ ବାଳ–ଅପରାଧ ଦିନକୁ ଦିନ ବୃଦ୍ଧି ପାଇବାରେ ଲାଗିଛି । ସରକାର ବାଳ–ଅପରାଧ ରୋକିବା ଦିଗରେ ବଳିଷ୍ଠ ପଦକ୍ଷେପ ନେଲେ ସୁଦ୍ଧା ପିତାମାତାଙ୍କର ଏଥି ପାଇଁ ଗୁରୁଦାୟିତ୍ୱ ରହିଛି । ସେମାନେ ନୀରବଦ୍ରଷ୍ଟାହୋଇ ପିଲାମାନଙ୍କ ଦ୍ୱାରା କରାଯାଇଥିବା ଅପରାଧ ପ୍ରତି ଆଖି ବୁଜି ଦେଲେ ବୁଝିବାକୁ ହେବ ଯେ ସେମାନେ ନିଜ ପରିବାରର କ୍ଷତି କରିବା ସଙ୍ଗେ ସଙ୍ଗେ ସାରା ସମାଜକୁ ବିପଦର ସମ୍ମୁଖୀନ କରୁଛନ୍ତି । ନିକଟରେ ବାଳ ଅପରାଧ ସଂକ୍ରାନ୍ତରେ ପୋଲିସ ୧୯୯୧ ମସିହାର ଜୁଲାଇ, ଅଗଷ୍ଟ ଓ ସେପ୍‌ଟେମ୍ବର ମାସର ଗୋଟିଏ ନିଖୁଣ ରିପୋର୍ଟ ଦେଇଛି । ସେହି ରିପୋର୍ଟରୁ ଯାହା ଜଣା ଯାଏ ତିନିମାସ ଭିତରେ ୨୯ଟି ବାଳ ଅପରାଧ ଧରା ପଡ଼ିଛି ।

ପ୍ରାକ କିଶୋରାବସ୍ଥା ବାଳ ଅପରାଧୀମାନଙ୍କର ନିର୍ଦ୍ଦିଷ୍ଟ ସମୟ । ବାଳ ଅପରାଧୀମାନଙ୍କର ବୟସ ଦୁଇଟି ସ୍ତରର ଅନ୍ତର୍ଗତ । ପ୍ରଥମ ସ୍ତରର ପିଲାମାନେ ୫ ବର୍ଷରୁ ୧୨ ବର୍ଷ ପର୍ଯ୍ୟନ୍ତ ଓ ଦ୍ୱିତୀୟ ସ୍ତରର ପିଲାମାନେ ୧୩ ବର୍ଷରୁ ୧୬ ବର୍ଷ ପର୍ଯ୍ୟନ୍ତ ବାଳ ଅପରାଧୀ ରୂପେ ପରିଗଣିତ ହୁଅନ୍ତି । ନରହତ୍ୟା ଓ ଡକାୟତି ଦୋଷରେ ଦ୍ୱିତୀୟ ସ୍ତରର ପିଲାମାନେ ଯୁବ ଅପରାଧୀମାନଙ୍କ ସହିତ ସହଯୋଗୀ ହୋଇ ଦୋଷରେ ଲିପ୍ତ ହୋଇଥାଆନ୍ତି । ଜେଲଖାନାରେ ଯାହା ଅନୁଭୂତ ହୁଏ, ଏମାନେ ପିତାମାତାଙ୍କ ଦ୍ୱାରା ନିୟନ୍ତ୍ରିତ ନହୋଇ କ୍ରମେ ଦୁର୍ଦ୍ଧର୍ଷ ଡକାୟତି ଓ ଆତତାୟୀ ଭାବେ ଆଜୀବନ ବନ୍ଦୀ ହୋଇ ରହିଥାଆନ୍ତି ।

ଅଶିକ୍ଷିତ ଓ ଅଭାବଗ୍ରସ୍ତ ପରିବାରର ପିତାମାତାମାନେ ଏହି ବାଳ ଅପରାଧୀମାନଙ୍କର ନିର୍ମାଣକାରୀ କହିଲେ ଅତିଶୟୋକ୍ତି ହେବ ନାହିଁ । କେତେକ ପରିବାରର ପିତାମାତା ଭାବନ୍ତି–ପିଲାକୁ ସ୍କୁଲକୁ ଛାଡ଼ି ଦେଲେ ସେମାନେ ପିଲାର ଦୌରାତ୍ମ୍ୟରୁ ରକ୍ଷା ପାଇଯିବେ ଏବଂ ପିଲା ମଧ୍ୟ ଶିକ୍ଷକଙ୍କ ଦ୍ୱାରା ନିୟନ୍ତ୍ରିତ ହୋଇ ପାରିବ । କିନ୍ତୁ ଏହି ଶ୍ରେଣୀର ଉକ୍ତ ପିତାମାତା ପିଲାର କାର୍ଯ୍ୟକଳାପ, ସାଥୀସାଙ୍ଗ, ଗ୍ରୁଲିଚଳନ ଓ ମନୋଭାବରେ କୌଣସି ତଦନ୍ତ ନକରି ଶିକ୍ଷକଙ୍କ ଉପରେ ନିର୍ଭର କରି ରହିଯାଆନ୍ତି । ଫଳତଃ ସେମାନେ ପିଲାମାନଙ୍କୁ ବିଶେଷ ଭାବେ ପଥଭ୍ରଷ୍ଟ ହେବାର ସୁଯୋଗ ଦେଇଥାଆନ୍ତି ।

ପିଲାମାନଙ୍କର ବାଲ୍ୟାବସ୍ଥାରେ ପାଠ ପ୍ରତି ଆଗ୍ରହ ନଥିବା ଚପଳମତିର ସ୍ୱାଭାବିକ ହାବଭାବ । ସେଥି ସକାଶେ କେତେକ ପିଲା ସ୍କୁଲରୁ ବିଭିନ୍ନ ପ୍ରକାର ଆଳ ଦେଖାଇ ଖୁଲି ଆସନ୍ତି ଏବଂ ଅନ୍ୟ କୁକର୍ମରେ ବ୍ୟସ୍ତ ରହି ସ୍କୁଲରୁ ଫେରୁଥିବା ଅନ୍ୟପିଲାମାନଙ୍କ ସହ ଘରକୁ ଫେରନ୍ତି । ଫଳରେ ପିତାମାତାଙ୍କର କୌଣସି ସନ୍ଦେହ ରହେନି । ସ୍କୁଲରୁ ପଳାଇ ଆସିବା କୁଅଭ୍ୟାସ (Trwancy) ଯଦି ଦୀର୍ଘ ଦିନ ଲାଗି ରହେ, ତା'ହେଲେ ପିଲା ଶିକ୍ଷାର୍ଜନ ପରିବର୍ତ୍ତେ ପରିବାରର ଏକ ଅଶାନ୍ତ ଗ୍ରହ ହୋଇ ରହେ ।

ପିଲାକୁ ପ୍ରଲୋଭନ ଦେଖାଇ ସ୍କୁଲକୁ ଛାଡ଼ିବା ପିତାମାତାଙ୍କର ଆଉ ଏକ ଦୋଷ । ଗାଁ ଗହଳରେ ହେଉ କିମ୍ବା ସହରରେ ହେଉ ପିତାମାତାମାନେ ଚକଲେଟ୍ ଦେଇ ବା ଅନ୍ୟାନ୍ୟ ଖାଦ୍ୟ ଜିନିଷ କିଣିବା ପାଇଁ ପଇସା ଦେଇ ପିଲାମାନଙ୍କୁ ବିଦ୍ୟାଳୟାଭିମୁଖୀ କରିଥାଆନ୍ତି । ଏ ଅଭ୍ୟାସ ବଡ଼ ମାରାତ୍ମକ । ଏହା ପିଲାର ବଦ୍‌ଅଭ୍ୟାସକୁ ବଢ଼ାଇ ଦିଏ ଓ ପଇସା ନପାଇବା ଦିନ ଘରୁ ସାଙ୍ଗ [illegible] ପକେଟରୁ ଚୋରି କରିଥାଏ । ଏହି ଅଭ୍ୟାସ ଏପରି ପ୍ରକୃତିଗତ ହୋଇ ଯାଏ, ଯାହା ଫଳରେ ଘରକୁ କୌଣସି ଅତିଥି କିମ୍ବା ଆତ୍ମୀୟସ୍ୱଜନ ଆସିଲେ ସେମାନଙ୍କ ପକେଟରୁ ଚୋରି କରିବାକୁ ଭୁଲି ନଥାଏ । କ୍ରମଶଃ ସେମାନେ ବଢ଼ି ବଢ଼ି କୁଖ୍ୟାତ ପକେଟମାର Pick-pockets) ହୋଇଯାଆନ୍ତି । ହାଟ, ବଜାର, ବସ୍‌ଷ୍ଟାଣ୍ଡ ଓ ରେଲୱେ ଷ୍ଟେସନମାନଙ୍କରେ ପକେଟମାରି ବହୁ ଅର୍ଥ ରୋଜଗାର କରନ୍ତି ଓ ପିତାମାତାଙ୍କୁ ଆର୍ଥିକ ସାହାଯ୍ୟ [illegible]

ସେମାନଙ୍କର ଆଦରର ଶଙ୍ଖଳି ହୋଇ ଥାଆନ୍ତି । ... ସେମାନଙ୍କର ... ପୋଲିସ୍ ହାତରେ ଧରା ପଡ଼ି ନିର୍ଯ୍ୟାତୀତ ହୁଅନ୍ତି ଓ ... ହୋଇଥାନ୍ତି ।

... ଦରିଦ୍ର ପରିବାରର ଅନେକ ପିଲା ଦେଖା ... । ପିଲାମାନଙ୍କର ସଂଖ୍ୟା ଗରିଷ୍ଠତା ନେଇ ପରିବାରରେ ... ବସବାସ, ବେଶଭୂଷା ଏବଂ ଖାଦ୍ୟପେୟରେ ସୁଖ ... । ତେଣୁ ପିତାମାତା ପିଲାମାନଙ୍କର ଉନ୍ନତିର ଆଶା ନରଖି ... ପ୍ରକାରେଣ କୌଣସିଠାରେ ମୁଠାଏ ପେଟ ପୂରାଇ ... ଖାଇବାକୁ ଦରକାର କରନ୍ତି । ପିଲାମାନେ କିପରି ବଞ୍ଚି ... ଏ ଲକ୍ଷ୍ୟ କେବଳ ସେମାନଙ୍କର । ଆର୍ଥିକ ସାହାଯ୍ୟ ... ଛାଡ଼ି ଦେଇଥାଆନ୍ତି । ଏହି ପରିପ୍ରେକ୍ଷୀରେ କେଉଁ ... ଗୁଡ଼ାରେ ପିଲାମାନେ ମୁଖ୍ୟତଃ କାମ କରିବାର ... ।

... ରେ ସେମାନଙ୍କ ଘରୋଇ କାମ କରିବାରେ ... ଥାଆନ୍ତି ।

... ମଦ ବେପାରୀମାନେ ଛୋଟ ପିଲାମାନଙ୍କୁ ରଖି ଥାଆନ୍ତି କାରଣ ମଦ ନେଣ ଦେଣ ଦିଗରେ ପୋଲିସ୍ ନଜର ସେମାନଙ୍କ ଉପରେ ପଡ଼ିବନି ।

... ହୋଟେଲମାନଙ୍କରେ ଟେବୁଲ ସଫାକରି ବାସନକୁସନ ମାଜିବାରେ ନିଯୁକ୍ତି ପାଇଥାଆନ୍ତି ।

... ରୁଖାଡ ଢାବାସ୍ତମାନଙ୍କର ଆଡ଼୍ଡା ସ୍ଥଳୀରେ ସେମାନଙ୍କର ସେବା କରିବା ପାଇଁ ନିଯୁକ୍ତି ପାଇଥାଆନ୍ତି ।

... ସଚ୍ଛଳ ପରିବାରରେ ଘର ଓଳାଇବା ଓ ବାସନକୁସନ ମାଜିବା ଦିଗରେ ନିଯୁକ୍ତି ପାଇଥାଆନ୍ତି ।

... ଗାଈ, ଛେଳି, ମେଣ୍ଢା ପ୍ରଭୃତି ଗୃହପାଳିତ ପଶୁମାନଙ୍କୁ ଚରାଇବାରେ ନିଯୁକ୍ତି ହୋଇଥାଆନ୍ତି ।

... ଧନାଢ୍ୟ ପରିବାରର ଗୃହସ୍ଥ ଓ ଗୃହିଣୀଙ୍କର ଗୋଡହାତ ଘଷିବା ଦିଗରେ ନିଯୁକ୍ତି ହୋଇଥାଆନ୍ତି ।

ସେମାନଙ୍କର ନିଯୁକ୍ତି ନେଇ ପିଲାମାନଙ୍କର ବିକାଶୋନ୍ମୁଖୀ ମନ ... ହୋଇଥାଏ । ଅବଶେଷରେ ସେମାନେ ଦୁଷିତ ... ଅପକର୍ମ କରିବାକୁ ସୁଯୋଗ ଖୋଜି ବୁଲନ୍ତି ।

କେତେକ ବାରବୁଲା ପିଲା ଅଛନ୍ତି ଯେଉଁମାନେ ଏଣେ ତେଣେ ... ରାତିରେ ସିନେମାହଲ୍ ବାରଣ୍ଡାରେ, ପାନଦୋକାନର ବେଞ୍ଚ ... ଫୁଟପାଥ୍‌ରେ ଶୋଇ ଜୀବନ ଯାପନ କରନ୍ତି । ଏମାନଙ୍କୁ ... ରେ Vagarant କୁହା ଯାଏ । ଏ ଶ୍ରେଣୀର ... ମାନେ ହୋଟେଲମାନଙ୍କରେ ରନ୍ଧନ ପାତ୍ରାଦି (Cooking Utensils) ସଫାକରି ହୋଟେଲର ବାସି ଜିନିଷ ଖାଇ ବଞ୍ଚି ... । ଏହି ବାରବୁଲା ପିଲାମାନଙ୍କୁ କେତେକ ବୟସ୍କ ଚତୁର ... ମାନେ ସେମାନଙ୍କର କୋମଳ ଅଙ୍ଗ ପ୍ରତ୍ୟଙ୍ଗକୁ ବିକୃତ ... । ସେମାନଙ୍କର ଅନୁଭୂତି ଯେ ପିଲାର ବିକୃତ ରୂପ ଦେଖିଲେ ଦାତାମାନଙ୍କର ହୃଦୟ ସହଜେ ଦ୍ରବୀଭୂତ ହୋଇଯିବ ଏବଂ ସେମାନେ ଦାତମାନଙ୍କଠାରୁ ଅଧିକ ଧନ ପାଇବେ ।

ଏତଦ୍ ବ୍ୟତୀତ କେତେକ ବିଶୃଙ୍ଖଳ ପରିବାର Disorganised family) ଅଛନ୍ତି ଯେଉଁ ପରିବାରର ପିଲାମାନେ ମଣିଷ ହେବା ପରିବର୍ତ୍ତେ ବିପଥଗାମୀ ହୋଇଥାଆନ୍ତି । ଘରର ଗୃହସ୍ଥ ଯଦି ନିଶାଖୋର, ବଞ୍ଚିବାର ସାଧୁପନ୍ଥା ନଥାଏ ଏବଂ ପରିବାରର ଲୋକମାନେ ଯଦି ସଂଯୋଗଶୀଳ (Cohesiue) ନୁହନ୍ତି, ତା'ହେଲେ ପିଲାମାନେ ଅଶାନ୍ତ ବାତାବରଣରେ ବଢ଼ି ଅକ୍ଳେଶରେ କୁକର୍ମୀ ହୋଇଯାଆନ୍ତି ।

ପ୍ରତ୍ୟେକ ପରିବାର ପିଲାର ନିର୍ମାଣଶାଳା । ପିତାମାତା ତଥା ପରିବାରରୁ ଗୁରୁଜନମାନେ ଆଦର୍ଶ ହେଲେ ସେମାନଙ୍କ ଆଦର୍ଶର ପ୍ରଭାବରେ ପିଲାମାନେ ପ୍ରଭାବିତ ହୋଇ ସମାଜରେ ଆଦର୍ଶ ହୋଇ ପାରିବେ । ପ୍ରତ୍ୟେକ ପରିବାର ଗୋଟିଏ ଲେଖାଏଁ ଦର୍ପଣ । ଦର୍ପଣରେ କାୟା ପ୍ରତିବିମ୍ବିତ ହେଲେ ଆମେ ଦେଖି ପାରିବା ଆମ ଦେହରେ ବା ମୁହଁରେ କେଉଁ ତ୍ରୁଟି ଅଛି । ତେଣୁ ପରିବାର ରୂପକ ଦର୍ପଣ ସବୁବେଳେ ପିଲାମାନଙ୍କ ପାଇଁ ସ୍ୱଚ୍ଛ ଓ ପରିମଳ ହେବା ଉଚିତ୍ ।

**Jurist Shri Ananda Narain Mulla has expressed his viehe, Children should be able to bring power and prestige to their families for which the family will be boastful.** ବ୍ୟବସ୍ଥା ଶାସ୍ତ୍ରବିତ୍ ଶ୍ରୀଯୁକ୍ତ ଆନନ୍ଦ ନାରାୟଣ ମୁଲ୍ଲା ତାଙ୍କ ଦୃଷ୍ଟିଭଙ୍ଗୀର ଆଲୋକପାତ କରି କହିଛନ୍ତି–ପିଲାମାନେ ନିଜନିଜ ପରିବାରକୁ ସମ୍ମାନ ଓ ଶକ୍ତି ଆଣିବାକୁ ସମର୍ଥ ହେବା ଉଚିତ୍ । ତାଦ୍ୱାରା ପିତାମାତା ନିଜକୁ ଗୌରବାନ୍ୱିତ ମନେ କରିବେ । ପରିବାର ତଥା ପିତାମାତା କେଉଁ କେଉଁ ଦିଗପ୍ରତି ପ୍ରଧାନତଃ ନଜର ଦେଲେ ପିଲା କର୍ତ୍ତବ୍ୟ ନିଷ୍ଠ ଓ ଚରିତ୍ରବାନ୍ ହୋଇପାରିବ ।

(୧) ପିଲାର ବାଲ୍ୟ ପଠନ ବେଳେ ପଢ଼ାଇ ଟିକିନିଖି ବିବରଣୀ ରଖିବେ ଓ ପିଲା ବିଷୟରେ ଅଧିକ ଜାଣିବା ପାଇଁ ଶିକ୍ଷକମାନଙ୍କ ସହିତ ସମ୍ପର୍କ ଅବ୍ୟାହତ ରଖିବେ ।

(୨) ପିଲାର ସଙ୍ଗୀମାନେ କେଉଁ ପ୍ରକାରର ଓ କାହା ସହିତ ସାଥୀ ହେବାକୁ ସେ ଆଗ୍ରହ ପ୍ରକାଶ କରୁଛି, ତାକୁ ଦେଖିବେ ।

(୩) ପିଲାର ମନୋଭାବ କେଉଁ ଆଡ଼କୁ ଗତି କରୁଛି ସେଥିପ୍ରତି ଦୃଷ୍ଟି ଦେବେ । ଯଦି ସେ କୌଣସି କାର୍ଯ୍ୟ ପ୍ରତି ଏକ ଜିଦ୍ ଧରେ ତା'ର ମାନସିକ ପରିବର୍ତ୍ତନ ପାଇଁ ଯତ୍ନବାନ୍ ହେବେ ।

(୪) ପିଲାକୁ ପଇସାପତ୍ର ଦେଇ ଲୋଭପ୍ରବଣ କରିବା ଉଚିତ୍ ନୁହେଁ ଓ ତା'ର ସବୁ ଦାବି ପୂରଣ କରିବା ଅନାବଶ୍ୟକ ବୋଲି ମନେ କରିବେ ।

(୫) ପିତାମାତା ଆଡ଼ମ୍ବରପୂର୍ଣ୍ଣ ବେଶଭୂଷାରୁ ନିଜେ ବର୍ଜିତ ହେବେ ଓ ଆଦର୍ଶ ହୋଇ ପିଲାର ସରଳ ଜୀବନ ପାଇଁ ପଥୋନ୍ମୁକ୍ତ କରିବେ ।

(୬) ପ୍ରତ୍ୟେକ ପରିସ୍ଥିତିରେ ପିଲାକୁ ସଦାଗ୍ରହୀ ହେବାକୁ ଉପଦେଶ ଦେବେ । ଏହା ଦ୍ୱାରା ତା' ବ୍ୟକ୍ତିତ୍ୱର ବିକାଶ ଘଟିବ । ବ୍ୟକ୍ତିତ୍ୱ ବିକଶିତ ହେଲେ ସେ ନୀଚକାମ ପ୍ରତି କେବେ ହେଲେ ଆଗ୍ରହୀ ହେବ ନାହିଁ ।

ପିଲାମାନେ ଅନୁକରଣଶୀଳ । ସେମାନେ ଯାହା ଦେଖିବେ ତାକୁ ପର ମୁହୂର୍ତ୍ତରେ କରିବେ÷ଏହା ସେମାନଙ୍କର ଏଁଣୀଶକ୍ତି । ତେଣୁ ପିତାମାତା ସବୁ ଦିଗରେ ଦୃଷ୍ଟାନ୍ତ ଉପଯୋଗୀ ହେଲେ ପରିବାର ଯଶସ୍ୱୀ ହୋଇ ପାରିବ । ବର୍ଦ୍ଧିତ ବାଳ ଅପରାଧର ପାରିବାରିକ ପ୍ରତିକାର କାହିଁକି ତା'ର ମୂଳୋତ୍ପାଟନ ପିତାମାତାଙ୍କ ହାତରେ । ବାଲ୍ୟାବସ୍ଥାରେ ଶ୍ରୀକୃଷ୍ଣଙ୍କ ତୁଣ୍ଡରେ ଯଶୋଦା ଚଉଦ ବ୍ରହ୍ମାଣ୍ଡ ଦେଖି ପାରିଥିଲେ । ପିଲା ଦେହରେ ସର୍ବାଦୌ ଅସୁମା... ଶକ୍ତି ଓ ଆଲୋକ ପୂରି ରହିଛି । ପିତାମାତା ଯତ୍ନବାନ୍ ହୋ... ସେହି ଅନ୍ତର୍ନିହିତ ଆଲୋକକୁ ପ୍ରଦୀପ୍ତ କଲେ ପିଲାମାନେ ପ୍ର... ପ୍ରତିଭ ହୋଇ ପରିବାର ତଥା ସମାଜର ଅନ୍ଧକାର ଅପସାର... ନିଶ୍ଚିନ୍ତ କରିପାରିବେ ।

---

ଅବସରପ୍ରାପ୍ତ ଜେଲ୍ ସୁପରିନ୍‌ଟେଣ୍ଡେଣ୍ଟ,
ହେମୋଦେଇପୁର ଶାସନ,
ନରସିଂହପୁର, କଟକ-୭୫୪୦୩୨ ।




ପୁରୀରେ ଉତ୍କଳ ଦିବସ ୧୯୯୭ ପାଳନ ଅବସରରେ ପୂର୍ତ୍ତ, ଗୃହ ନିର୍ମାଣ ଓ ନଗର ଉନ୍ନୟନ ମନ୍ତ୍ରୀ ଶ୍ରୀ ନଳିନୀକାନ୍ତ ମହାନ୍ତି ଉଦ୍‌ବୋଧନ ଦେଉଛନ୍ତି ।

# ସାମାଜିକ ବନୀକରଣ କ'ଣ ଓ କାହିଁକି ?

ରୀତା ଦାସ

ଆମ ଗାଁରେ ଯେଉଁ ବୁଢ଼ା ବୁଢ଼ୀମାନେ ଏବେ ଅଛନ୍ତି, ସେମାନଙ୍କୁ ପଚାରିଲେ କହିବେ ଆଗେ ସେମାନଙ୍କ ସମୟରେ ଗାଁ ପାଖରେ କେତେ ବଣ ଜଙ୍ଗଲ ଥିଲା । ଗାଁ ଭିତରେ ବଡ଼ ବଡ଼ ଗଛ ଥିଲା । ରଙ୍ଗ ବେରଙ୍ଗୀ ଫଳ ଫୁଲରେ ଗାଁ ଭରି ରହୁଥିଲା । ଖାଇବା ପାଇଁ ଫଳଫୁଲ, ଘର ତିଆରି ପାଇଁ କାଠ, ଜାଳେଣୀ କାଠ ଅଭାବ ନଥିଲା । ଜଙ୍ଗଲ ଓ ମଣିଷ ପରସ୍ପରର ବନ୍ଧୁ ଭାବରେ ରହିଥିଲେ ।

ମାତ୍ର ଏବେ ଅବସ୍ଥା କଣ ? ପାହାଡ ପର୍ବତ ସବୁ ଲଣ୍ଡା ହୋଇ ଯାଇଛି । ବଡ ବଡ ଗଛ ସଂଖ୍ୟା କମି ଯାଇଛି । ଯେଉଁ ଗଛ ସବୁ ଗାଁର ଶୋଭା ବଢ଼ାଇ ଥିଲା, ସେ ସବୁ ଦେଖିବାକୁ ସ୍ୱପ୍ନ । ଗାଁ ପାଖରେ ରହିଥିବା ଜଙ୍ଗଲ ବହୁ ଦୂରକୁ ଚାଲି ଯାଇଛି । ଫୁଲ ଫଳ ମିଳୁନି । ଜାଳେଣୀ କାଠ ପାଇବା ପାଇଁ ବହୁ ଦୂର ଯିବାକୁ ପଡୁଛି । ଝରଣା ଶୁଖି ଗଲାଣି । ବହୁ ଦୂରରେ ପାଣି ମିଳୁଛି । ବର୍ଷା କମ୍ ହେଉଛି । ଯାହା ଉପରେ ନିର୍ଭର କରି ସାଧାରଣ ଲୋକେ ବଞ୍ଚୁଥିଲେ, ସେମାନଙ୍କ ଦୁଃଖ କଷ୍ଟ ବଢ଼ି ଯାଇଛି । ଜଳବାୟୁ ପରିବର୍ତ୍ତନ ହେବା ଯୋଗୁ କୃଷି କାମ ବାଧା ପାଉଛି । ଜଙ୍ଗଲ କମି ଯିବାରୁ ଆମେ କଣ ଅସୁବିଧା ଭୋଗ କରୁଛୁ, ତାହା ଭୁକ୍ତଭୋଗୀ ଲୋକେ ହିଁ କହିବେ ।

କିନ୍ତୁ ଏଭଳି ଅବସ୍ଥା ହେଲା କାହିଁକି ? ଜଙ୍ଗଲ ଥିଲା, ଲୋକେ ଥିଲେ । କ୍ରମେ କ୍ରମେ ଜଙ୍ଗଲ କମିଲା, ଲୋକ ସଂଖ୍ୟା ବଢ଼ିଲା । ଆଧୁନିକ ଯୁଗ ସହ ତାଳ ଦେଇ ଚାଲିବା ପାଇଁ ଆମେ ବିଶ୍ୱର ଶ୍ରେଷ୍ଠ ସମ୍ପଦ ଜଙ୍ଗଲ ନଷ୍ଟ କଲୁ । ଗଛ କାଟିଲୁ । କଳ କାରଖାନା ବସାଇବା ପାଇଁ ଜଙ୍ଗଲ ସଫା ହେଲା । ବଡ ବଡ ଯୋଜନା ପାଇଁ ମଧ୍ୟ ଜଙ୍ଗଲ ସଫା ହେଲା । ଘର ତିଆରି କରିବା ପାଇଁ କାଠ ଦରକାର । ଲୋକଙ୍କ ପାଖରେ ପଇସା ଅଧିକ ହେବାରୁ ଲୋକେ ସୁଖରେ ରହିବାକୁ ଚାହିଁଲେ । ଏଣୁ କାଠ ଦରକାର ପଡ଼ିଲା, ସୌଖୀନ ଜିନିଷ କରିବା ପାଇଁ, କଳକାରଖାନା ପାଇଁ । ଏହାର କଞ୍ଚାମାଲ ରୂପେ ବାଉଁଶ ଓ କାଠ ଅଧିକରୁ ଅଧିକ ଦରକାର ପଡ଼ିଲା । ଅନ୍ୟାନ୍ୟ ଜଙ୍ଗଲ ଜାତ ଦ୍ରବ୍ୟ କଳକାରଖାନା ପାଇଁ ଆବଶ୍ୟକ ହେଲା । କୃଷି ଜମିର ଅଭାବ ଯୋଗୁ ସହଜ ଉପାୟରେ ଅଳ୍ପ ପରିଶ୍ରମରେ ଜଙ୍ଗଲ ପୋଡ଼ି କୃଷି ହେଲା । ମଣିଷର ଲୋଭ ବହୁତ । ରାତାରାତି ବଡ ବଡ ଗଛ ବେଆଇନ ଭାବେ କାଟି ଚୋରାରେ ବିକି କରି ଲାଭ ଉଠାଇବା ପାଇଁ କେତେ ଲୋକ ଲାଗି ପଡ଼ିଲେ ।

ଜଙ୍ଗଲ କ୍ଷୟର କୁ ପ୍ରଭାବ ସାରା ଦେଶ ଓ ସମାଜ ଉପରେ ପଡ଼ିଲା । ଜଙ୍ଗଲକୁ ଆଶ୍ରୟ କରି ଯେଉଁ ପଶୁ ପକ୍ଷୀ ରହୁଥିଲେ ଓ ପ୍ରାକୃତିକ ପରିବେଶର ସୁରକ୍ଷା ପାଇଁ ଯେଉଁମାନଙ୍କର ବିଶେଷ ଅବଦାନ ଥିଲା, ସେମାନଙ୍କ ସଂଖ୍ୟା ମଧ୍ୟ କମିବାକୁ ଲାଗିଲା । ଜଙ୍ଗଲକୁ ଆଶ୍ରୟ କରି ବର୍ଷା ହୁଏ । ଜଳବାୟୁ ନିୟନ୍ତ୍ରିତ ହୁଏ । ଜଙ୍ଗଲ କମିବାରୁ ବର୍ଷା କମିଲା । କୃଷି ବାସରେ ବାଧା ପଡ଼ିଲା ଯେଉଁଠି ଶୀତ ହେବା କଥା, ସେଠାରେ ଗରମ ବଢ଼ିଲା । ଜଙ୍ଗଲ ଉପରେ ନିର୍ଭରଶୀଳ ସବୁ କ୍ଷେତ୍ରରେ ଗୋଳମାଳ ସୃଷ୍ଟି ହେଲା । କ୍ରମେ କ୍ରମେ ଏପରି ପରିସ୍ଥିତି ସୃଷ୍ଟି ହେଲା ଯେ କେବଳ ଆମ ଗାଁ, ଜିଲ୍ଲା, ବା ରାଜ୍ୟ ନୁହେଁ ସାରା ଦେଶ ଓ ବିଦେଶରେ ମଧ୍ୟ ଉଦ୍‌ବେଗ ସୃଷ୍ଟି ହେଲା । ବଡ ବଡ ବିଜ୍ଞାନୀ ମାନେ ହିସାବ କରି କହିଛନ୍ତି ଯେ ଗୋଟିଏ ଦେଶର ୩ ଭାଗରୁ ଏକ ଭାଗ ଅଂଶରେ ଅତି କମ୍‌ରେ ଜଙ୍ଗଲ ରହିବା କଥା । ୩୦ ବର୍ଷ ପୂର୍ବେ ଓଡ଼ିଶାରେ ଶତକଡା ୪୩ ଭାଗ ଜଙ୍ଗଲ ଥିଲା ବୋଲି ହିସାବ କରାଯାଇଥିଲା । ରିଜର୍ଭ ଜଙ୍ଗଲ, ଅଣ ରିଜର୍ଭ ଜଙ୍ଗଲ, ଗ୍ରାମ୍ୟ ଜଙ୍ଗଲକୁ ଏହି ହିସାବ କରାଯାଇଥିଲା । ମାତ୍ର ପ୍ରକୃତ ପକ୍ଷେ କେତେ ଜଙ୍ଗଲ ଥିଲା, ତହିଁରେ ସନ୍ଦେହ ରହିଛି । ସେତେବେଳେ କୁହାଯାଉଥିଲା, ଓଡ଼ିଶା ବନ୍ୟ ସମ୍ପଦରେ ଭରପୁର, ଏଣୁ ବାହାର ଶିଳ୍ପପତୀମାନେ ଏଠାକୁ ଆସି କଳ କାରଖାନା ବସାନ୍ତୁ । ଆକାଶ ମାର୍ଗରୁ ବଣ ଜଙ୍ଗଲ, ଭୂମି, ଜଳ ପ୍ରଭୃତିର ଉପଗ୍ରହ ଜରିଆରେ ଚିତ୍ର ନିଆଯାଇଛି । ସେହି ଚିତ୍ରରୁ ଜଣା ଯାଉଛି ଯେ ଏବେ ଆମ ଜଙ୍ଗଲର ପରିମାଣ ଶତକଡା ୨୦ ଭାଗକୁ କମି ଗଲାଣି । ହୁଏତ ଏହାର ପରିମାଣ ଆହୁରି କମ୍ ହୋଇପାରେ ।

ଅବଶ୍ୟ ଖୁସିର କଥା ଯେ ଗତ ୨ ବର୍ଷ ମଧ୍ୟରେ ୯୦ ବର୍ଗ କିଲୋମିଟର ନୂଆ ଜଙ୍ଗଲ ହୋଇଛି ବୋଲି ଜଙ୍ଗଲ ବିଭାଗ ମନ୍ତ୍ରୀ

ବିଧାନ ସଭାରେ ଉତ୍ତର ଦେଇଛନ୍ତି । ୧୯୮୧ ରେ ୫୯,୬୩୩ ବର୍ଗ କିଲୋମିଟର ଜଙ୍ଗଲ ଥିଲା । ୧୯୮୯ ରେ ଏହା ୪୭,୧୩୩ ବର୍ଗ କିଲୋମିଟରକୁ କମିଥିଲା । ଏଥର ହିସାବ ଅନୁଯାୟୀ ୪୭୦୭୪ ବର୍ଗ କିଲୋମିଟରକୁ ଜଙ୍ଗଲ ବଢ଼ିଛି । ଏହି ବଢ଼ିବା ହାର ଶତକଡା ୦.୮୯ ହୋଇଥିଲେ ମଧ୍ୟ ଏହା ଆନନ୍ଦର ବିଷୟ, କାରଣ ଆମେ ଜାଣିଥିଲୁ ଜଙ୍ଗଲ କମୁଛି । ମାତ୍ର ଏବେ ଏହା ସାମାନ୍ୟ ବଢ଼ିଛି ।

## ସାମାଜିକ ବନ ପ୍ରକଳ୍ପ

ଆଗରୁ କୁହାଯାଇଛି ଯେ ଜଙ୍ଗଲ କମିବାରୁ କେବଳ ଆମ ଦେଶରେ ନୁହେଁ, ସାରା ପୃଥିବୀରେ ଉଦ୍‌ବେଗ ପ୍ରକାଶ ପାଇଛି । ଓଡ଼ିଶାର ଜଙ୍ଗଲ କମିବା ସମସ୍ୟା ଜାଣିବା ପରେ ସ୍ୱିଡେନ୍ ସରକାରଙ୍କ "ସ୍ୱିଡେନ୍ ଆନ୍ତର୍ଜାତିକ ଉନ୍ନୟନ ସଂସ୍ଥା (SIDA)" ସାହାଯ୍ୟ କରିବାକୁ ଆଗେଇ ଆସିଲେ । ସେମାନେ ଆବଶ୍ୟକୀୟ ଅର୍ଥ ସାହାଯ୍ୟ କଲେ । ଜ୍ଞାନର ଉପଯୋଗ କରି ଗାଁ ଲୋକଙ୍କ ସାହାଯ୍ୟରେ ନୂଆ ଜଙ୍ଗଲ ସୃଷ୍ଟି କରିବା ପାଇଁ ଯୋଜନା ତିଆରି କରାଗଲା । ଆଗରୁ ରାଜ୍ୟ ସରକାରମାନେ ଓ କେନ୍ଦ୍ର ସରକାର ନୂଆ ଜଙ୍ଗଲ ପାଇଁ ଟଙ୍କା ଦେଉଥିଲେ ଓ କିଛି କାମ ହେଉଥିଲା । ମାତ୍ର ସମସ୍ୟା ଏତେ ବଡ଼ ଯେ, ଲୋକଙ୍କୁ ଏଭଳି କାର୍ଯ୍ୟକ୍ରମରେ ଭାଗୀଦାର ନ କଲେ, ସ୍ୱତନ୍ତ୍ର ଭାବେ ଦୃଷ୍ଟି ଦେବା ସମ୍ଭବ ହେବ ନାହିଁ । ଏଣୁ ଲୋକଙ୍କ ଦ୍ୱାରା, ଲୋକଙ୍କ ପାଇଁ ଏବଂ ଲୋକଙ୍କୁ ନେଇ ସ୍ୱିଡେନ୍ ଆନ୍ତର୍ଜାତିକ ଉନ୍ନୟନ ସଂସ୍ଥାର ସାହାଯ୍ୟରେ ଏହି ନୂଆ ଯୋଜନା ଲୋକମାନଙ୍କ ମଧ୍ୟରେ ଜଙ୍ଗଲର ବିକାଶ ପ୍ରତି ସଚେତନତା ସୃଷ୍ଟି କରିବା, ଲୋକମାନଙ୍କ ଦ୍ୱାରା ନୂତନ ଜଙ୍ଗଲ ସୃଷ୍ଟି କରିବା, ଏହାର ରକ୍ଷଣାବେକ୍ଷଣ ଦାୟିତ୍ୱ ଲୋକମାନଙ୍କ ଉପରେ ନ୍ୟସ୍ତ କରିବା ଏବଂ ଏହି ଜଙ୍ଗଲର ଲାଭ ଲୋକମାନଙ୍କ ମଧ୍ୟରେ ଆବଶ୍ୟକତା ଅନୁଯାୟୀ ସମପରିମାଣରେ ବଣ୍ଟନ କରିବା ଏହି ସାମାଜିକ ବନୀକରଣ ପ୍ରକଳ୍ପର ଲକ୍ଷ୍ୟ । ଅସଲ କଥା ହେଲା, ଆଗେ ସରକାର ଗଛ ଲଗାଉଥିଲେ ଓ ଜଙ୍ଗଲ କରୁଥିଲେ । ସେଥିରେ ସ୍ଥାନୀୟ ଲୋକଙ୍କର ଭାଗ ନଥିଲା । ସାମାଜିକ ବନୀକରଣ ପ୍ରକଳ୍ପ ଅନୁଯାୟୀ, ଚାରା ତିଆରି କରିବା, ଗଛ ଲଗାଇବା, ଗଛର ଯତ୍ନ ନେବା ଓ ଜଙ୍ଗଲରୁ ମିଳୁଥିବା ଲାଭ ଗ୍ରାମ କମିଟିର ମତ ଅନୁଯାୟୀ ଗ୍ରାମବାସୀଙ୍କୁ ଦେବା ଏହି ପ୍ରକଳ୍ପର ଲକ୍ଷ୍ୟ । ଗାଁ ନିକଟରେ ଜଙ୍ଗଲ କରିବା ଦାୟିତ୍ୱ ଗ୍ରାମବାସୀଙ୍କର । ସେମାନେ ନିଜେ ପରିଶ୍ରମ କରି ଜଙ୍ଗଲ କରିବେ । ସେମାନଙ୍କୁ ଏ କାମ ପାଇଁ ସବୁ ପ୍ରକାର ସାହାଯ୍ୟ ପ୍ରକଳ୍ପ ପକ୍ଷରୁ ମିଳିବ । ବର୍ଷେ ଦୁଇ ବର୍ଷ ପର୍ଯ୍ୟନ୍ତ ବନ ବିଭାଗର କର୍ମଚାରୀମାନେ ସେମାନଙ୍କୁ ସାହାଯ୍ୟ କରିବେ । ପ୍ରକଳ୍ପ ଟଙ୍କା ଖର୍ଚ୍ଚ କରାଯିବା ବୈଷୟିକ ସାହାଯ୍ୟ ଦିଆଯିବ । ଯେଉଁମାନେ କାମ କରିବେ ସେମାନେ ମଜୁରି ପାଇବେ ଓ ଜଙ୍ଗଲ ସୃଷ୍ଟି ହେବା ପରେ ସେମାନେ ତାହାର ମାଲିକ ହେବେ । ଗ୍ରାମ କମିଟି କରିଥିଲେ ସବୁ କାମ ହେବ । ଲୋକେ ଜଙ୍ଗଲକୁ ନିଜର ବୋଲି ଗ୍ରହଣ କରିନେଲେ, ଜଙ୍ଗଲର ରକ୍ଷଣାବେକ୍ଷଣ, ସୁରକ୍ଷା ଓ ଅଭିବୃଦ୍ଧି ସହଜ ହେବ ।

ସ୍ୱିଡେନ୍ ଅନ୍ତର୍ଜାତିକ ଉନ୍ନୟନ ସଂସ୍ଥା ଆର୍ଥିକ ସାହାଯ୍ୟ... କାର୍ଯ୍ୟକାରୀ ହେଉଥିବା ସାମାଜିକ ବନୀକରଣ ପ୍ରକଳ୍ପ ... ଭାଗରେ ବିଭକ୍ତ । ପ୍ରଥମଟି ୧୯୮୩ ରୁ ୧୯୮୮ ମଧ୍ୟରେ ... କୋଟି ଟଙ୍କା ବ୍ୟୟରେ ୧୩ଟି ଜିଲ୍ଲାର ବିଭିନ୍ନ ... କାର୍ଯ୍ୟକାରୀ ହେଲା । ପ୍ରାୟ ୫,୦୦୦ ଗ୍ରାମରେ ଜଙ୍ଗଲ ... କରିବା ପାଇଁ ଏହାର ଲକ୍ଷ୍ୟ ଥିଲା । ଦ୍ୱିତୀୟ ପର୍ଯ୍ୟାୟ ଯୋଜନା ... ୧୯୮୮ ରୁ ୧୯୯୩ ପର୍ଯ୍ୟନ୍ତ କାର୍ଯ୍ୟକାରୀ ହେଉଛି । ଏଥିରେ ... କୋଟି ଟଙ୍କା ଖର୍ଚ୍ଚ ହେବ ଓ ପ୍ରାୟ ୭,୫୦୦ ଗ୍ରାମରେ ଜଙ୍ଗଲ ... ହେବ । ଏହି ଯୋଜନା ଭଲ ଭାବରେ କାର୍ଯ୍ୟକାରୀ ହେଉଛି ... ଲୋକଙ୍କୁ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ଜଙ୍ଗଲ ବୃଦ୍ଧି କରୁଛି ... ମୂଲ୍ୟାୟନ କରାଯାଇଛି ।

ପ୍ରଥମ ପର୍ଯ୍ୟାୟ ଯୋଜନାରେ ଗ୍ରାମର ପତିତ ଓ ଅନାବାଦୀ ... ଜମିରେ ଜଙ୍ଗଲ ସୃଷ୍ଟି, ଯେଉଁ ସଂରକ୍ଷିତ ଜମି ରହୁଛି ... ସେଠାରେ ବୃକ୍ଷ ରୋପଣ, ବୈଜ୍ଞାନିକ ପ୍ରଣାଳୀରେ ଜଙ୍ଗଲ ... ପୁନରୁଦ୍ଧାର, ସରକାରୀ ଜମିରେ ବୃକ୍ଷ ସଙ୍ଗେ ସଙ୍ଗେ, ଯେଉଁ ... ଲଗାଯାଇ ପାରିବ ତହିଁର ବ୍ୟବସ୍ଥା ଓ ସେହି ଗଛଗୁଡ଼ିକୁ ... ଲୋକଙ୍କୁ ପଟ୍ଟା ଦେବା ପାଇଁ ଲକ୍ଷ୍ୟ ଥିଲା । ଏହା ସନ୍ତୋଷଜନକ ଭାବେ କାର୍ଯ୍ୟକାରୀ ହୋଇଛି । ଯେଉଁମାନେ ନିଜ ... ବଗିଚାରେ ଗଛ ଲଗାଇବେ, ସେମାନଙ୍କୁ ୫୦୦ ପର୍ଯ୍ୟନ୍ତ ଚାରା ମାଗଣାରେ ଦିଆଯାଇଛି । ବହୁ ସଂଖ୍ୟକ ଚାରା ଆବଶ୍ୟକ ପଡ଼ିବାରୁ, ବେସରକାରୀ ସ୍ୱେଚ୍ଛାସେବକ ସଂସ୍ଥା ଜରିଆରେ ଚାରା ପ୍ରସ୍ତୁତ କରାଯାଉଛି ।

ସାମାଜିକ ବନୀକରଣ ଯୋଜନା ଅନୁଯାୟୀ ଗ୍ରାମ ଜଙ୍ଗଲ ... ଏବଂ ଏହାର ପରିଚାଳନା ପାଇଁ ସରପଞ୍ଚ, ୱାର୍ଡ ମେମ୍ବର, ... ଓ ଆଦିବାସୀଙ୍କ ପ୍ରତିନିଧି ଓ ସରକାରୀ ବ୍ୟକ୍ତିଙ୍କୁ ନେଇ ଗ୍ରାମ ଜଙ୍ଗଲ କମିଟିମାନ ଗଠନ କରାଯାଇଛି । ପ୍ରତ୍ୟେକ ଗ୍ରାମ ଜଙ୍ଗଲ ପାଇଁ ଗ୍ରାମ କମିଟିଙ୍କ ପରାମର୍ଶ ଅନୁଯାୟୀ ଏକ ... ଦଲିଲ ତିଆରି କରାଯାଇଛି । ଏଥିରେ ଜଙ୍ଗଲର ପରିଚାଳନା, ରକ୍ଷଣାବେକ୍ଷଣ ଓ ବଣ୍ଟନ ସମ୍ବନ୍ଧୀୟ ସମସ୍ତ ନିୟମ ... ରହେ । ଜଙ୍ଗଲ ଲୋକଙ୍କର । ସେମାନେ ଏହାର ମାଲିକ । ଏଥିରୁ ଯାହା ଲାଭ ହେବ ତାହା ଲୋକେ ପାଇବେ । ... ଜଙ୍ଗଲକୁ ନଷ୍ଟ କରାଯାଇ ପାରିବ ନାହିଁ । ଆବଶ୍ୟକ ... ଜଙ୍ଗଲ ଜାତ ଜିନିଷ ଦେବାରେ ଅସୁବିଧା ନାହିଁ । ଗ୍ରାମ ... କର୍ମଚାରୀଙ୍କ ଦ୍ୱାରା ଜଙ୍ଗଲ ପରିଚାଳନା କରିବାର ଅଧିକାର ... ସଂଶୋଧନ କରାଯାଇ ନିୟମାବଳୀ ତିଆରି ହୋଇଛି ।

ସାମାଜିକ ବନୀକରଣର ଦ୍ୱିତୀୟ ପର୍ଯ୍ୟାୟ କାମ ପ୍ରଥମ ପର୍ଯ୍ୟାୟ ଭଳି ହୋଇଥିଲେ ମଧ୍ୟ ଏଥିରେ କେତେକ ନୂଆ କାମ ... ରହିଛି । ସରକାରୀ ଏବଂ ଅନାବାଦୀ ଜମିରେ ଗ୍ରାମ ଜଙ୍ଗଲ ସୃଷ୍ଟି କରାଯିବା ବ୍ୟତୀତ ସର୍ବସାଧାରଣଙ୍କ ଜମି, ବିଭିନ୍ନ ରାସ୍ତା, କେନାଲ ବନ୍ଧ, ପୋଖରୀ ହୁଡ଼ା, ଶିକ୍ଷାନୁଷ୍ଠାନ ... ଅନୁଷ୍ଠାନର ଖାଲି ପଡ଼ିଥିବା ଜମିରେ ଗଛ ଲଗାଇବା ପାଇଁ ... ପର୍ଯ୍ୟାୟରେ ବ୍ୟବସ୍ଥା କରାଯାଇଛି ।

କ୍ଷୁଦ୍ର ତଥା ନାମମାତ୍ର ଚାଷୀଙ୍କୁ କ୍ଷେତ ବାଡ଼ିରେ ବୃକ୍ଷ ରୋପଣ ... ପାଇଁ ଅବଶ୍ୟକୀୟ ସାର, ଔଷଧ ବିନା ମୂଲ୍ୟରେ ...

...ଯାଉଛି। ୨୫୧ ରୁ ୫୦୦ ଚାରା ପାଇବାକୁ ହେଲେ ...ପ୍ରଥମ ତିନି ବର୍ଷରେ ଗୋଟିକୁ ୫ ପଇସା ଓ ଶେଷ ୨ ...ଗୋଟିକୁ ୧୦ ପଇସା ହାରରେ ଚାରା ଯୋଗାଇ ...ଦେବ। ୫୦୦ ରୁ ଅଧିକ ଚାରା ପାଇଁ ପୁରା ଦାମ୍ ଦେବାକୁ ...ହେବ। ଯେଉଁମାନେ ଭଲ ଭାବରେ ବୃକ୍ଷ ରୋପଣ କରି ସଫଳ ... ସେମାନଙ୍କୁ ପୁରସ୍କାର ଦିଆଯିବା ବ୍ୟବସ୍ଥା ମଧ୍ୟ ରହିଛି।

...ଜମି ଏବଂ ଅନ୍ୟ କେତେକ କିସମର ଜମିରେ ଏହି ...ଶତକଡା ୨୦ ଭାଗ ସଘନ ବୃକ୍ଷ ରୋପଣ ପାଇଁ ...କରାଯିବ। ଅବଶିଷ୍ଟ ୮୦ ଭାଗ କୃଷି ଭିତ୍ତିକ ଗଛ ଚାଷର ବ୍ୟବସ୍ଥା ରହିଛି। ରାଜ୍ୟର ୬ ଗୋଟି ଆଦିବାସୀ ଅଧ୍ୟୁଷିତ ଜିଲ୍ଲାର ପୋଡୁଚାଷ ହେଉଥିବା ଅଞ୍ଚଳରେ କୃଷି ଭିତ୍ତିକ ଗଛ ଚାଷ ପାଇଁ ଦ୍ୱିତୀୟ ପର୍ଯ୍ୟାୟରେ ବିଶେଷ ବ୍ୟବସ୍ଥା ରହିଛି। ଏଥିରେ ୭,୫୦୦ ଆଦିବାସୀ ପରିବାର ଉପକୃତ ହେବେ। ଜନସାଧାରଣ ଏହି କାର୍ଯ୍ୟକ୍ରମରେ ସାହାଯ୍ୟ ସହଯୋଗ କଲେ ଖୁବ୍ ଶୀଘ୍ର ଆମ ରାଜ୍ୟର ଜଙ୍ଗଲ ପରିମାଣ ଆଶାତୀତ ଭାବେ ବଢ଼ିଯିବ।

ଗୀତା ଦାସ,
୧୪୫୯, ଶାସ୍ତ୍ରୀନଗର
ଭୁବନେଶ୍ୱର।



...ଭବନଠାରେ ଆୟୋଜିତ ଏକ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ବିଶିଷ୍ଟ ବଂଶୀବାଦକ ପଦ୍ମଭୂଷଣ ପଣ୍ଡିତ ହରିପ୍ରସାଦ ଚୌରାସିଆଙ୍କୁ ସମ୍ବର୍ଦ୍ଧିତ କରୁଛନ୍ତି। ଏହି ଉତ୍ସବରେ ସଂସ୍କୃତି ବିଭାଗ ଶାସନ ସଚିବ ଶ୍ରୀ ଅଶୋକ କୁମାର ମିଶ୍ର ଉପସ୍ଥିତ ଅଛନ୍ତି।




ଉତ୍କଳ ବିଶ୍ୱବିଦ୍ୟାଳୟ ତୃତୀୟ ମହିଳା ଛାତ୍ରୀ ନିବାସର ପ୍ରଥମ ବାର୍ଷିକୀ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ବୋଧନ ଦେଉଛନ୍ତି ।



ରବୀନ୍ଦ୍ର ମଣ୍ଡପଠାରେ ଆୟୋଜିତ ରାଜ୍ୟସ୍ତରୀୟ ଉତ୍କଳ ଗୌରବ ମଧୁସୂଦନ ଜୟନ୍ତୀ ଉତ୍ସବ ବାଚସ୍ପତି ଶ୍ରୀ ଯୁଧିଷ୍ଠିର ଦାସ ଉଦ୍‌ଘାଟନ କରୁଛନ୍ତି ।



ବାଲିପାଟଣାଠାରେ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କର ଏକ ସୂଚନା କେନ୍ଦ୍ର ଉଦ୍‌ଘାଟନ କରୁଛନ୍ତି ।

# ସଫଳ କାହାଣୀ

## ମୋନ୍ ଖ୍ରୁଲ ଆଜି ମୋହନ ବାବୁ

ମାଲକାନ୍‌ଗିରି ସବ୍‌ଡିଭିଜନ୍‌ରେ ବୀର ଲକ୍ଷ୍ମଣପୁର ଗ୍ରାମ । ମାଲକାନ୍‌ଗିରି ବ୍ଲକର ୧୮ କି: ମି: ଦୂରରେ । ଏଇଟି ଗୋଟିଏ ଛୋଟିଆ ଗାଁ ଯେଉଁଠି କେବଳ ସରଳ ଆଦିବାସୀ କୁଲି କାମକରି ଜୀବିକା ନିର୍ବାହ କରନ୍ତି । କାହିଁ କେଉଁ ଆଦିମ କାଳରୁ ସେହି ଲୋକମାନେ ମଣିଷ ଭାବରେ କୁଲି ମଣିଷ ଭାବରେ ପରିଚିତ । ଏହି ବୀର ଲକ୍ଷ୍ମଣପୁର ଗ୍ରାମରେ ମୋହନ୍ ଖ୍ରୁଲର ଘର । ତାକୁ ସମସ୍ତେ ମୋନ୍ ବୋଲି ଡାକନ୍ତି । ବାପା ଗୋବର୍ଦ୍ଧନ ଖ୍ରୁଲ ସାରା ଜୀବନ କୁଲି ଭାବରେ ଏବଂ ଗୋତି ଶ୍ରମିକ ଭାବରେ କଟାଇଛନ୍ତି । ଦୁଃଖ ଏବଂ ଦାରିଦ୍ର୍ୟ ଯେପରି ତାଙ୍କ ଶରୀରର ଅଙ୍ଗ ପ୍ରତ୍ୟଙ୍ଗ ସହିତ ମିଶିଯାଇଛି । ବାପା ଗୋବର୍ଦ୍ଧନ ଖ୍ରୁଲଙ୍କ ପରି ମୋହନ ଖ୍ରୁଲ ନିଜର ପରିବାରକୁ ଚଳାଇବାକୁ ବହୁତ ଶ୍ରମ କଲା ମାତ୍ର ହାରିଗଲା । ଏତେ ବଡ ପରିବାରଙ୍କୁ ସମାନ୍ୟ ଦିନ ମଜୁରିରେ ଚଳାଇବା କଷ୍ଟକର ବ୍ୟାପାର ହୋଇପଡ଼ିଲା । ଶେଷରେ ସେ ପରିବାର ପାଇଁ ଗାଁର ସାହୁକାର ପାଖରେ କରଜ କରିବାକୁ ବାଧ୍ୟହେଲା । ସେ ଗୋତି ଶ୍ରମିକ ଭାବରେ ଗଣିନେଲା ନିଜକୁ । ହଜାଇ ଦେଲା ନିଜକୁ ସାହୁକାର କାମରେ । ଭୁଲିଗଲା ନିଜର ଭବିଷ୍ୟତ ଏବଂ ନିଜର ପିଲାମାନଙ୍କ କଥା । ୩୮ ବର୍ଷର ମୋହନ ଖ୍ରୁଲ ମନରେ ଆଉ ଆଶା ନଥିଲା ଯେ ସେ ଦିନେ ଗୋତି ଶ୍ରମିକରୁ ଉଦ୍ଧାର ହେବ । କେବେ କେବେ ରାତିରେ କାହିଁ କେତେ ଆଶା ନେଇ ସ୍ୱପ୍ନ ଦେଖେ । ନିଜ ପିଲାମାନଙ୍କ ଭବିଷ୍ୟତ ଆଖି ଆଗରେ ଭାସି ଉଠେ ଏକ ନୂଆ ସକାଳ ପରି । ଆଖିର ଲୁହ ଗାମୁଛାରେ ପୋଛି ପୁଣି ଲାଗିଯାଏ କାମରେ । ତେବେ ସୁଖପରେ ଦୁଃଖ ହଠାତ୍ ଦିନେ ସେ କାଳ ରାତି ପାହିଗଲା । ଈଶ୍ୱରଙ୍କ ଆଶୀର୍ବାଦ ହାତ ତା ଉପରେ ଯେମିତି ସ୍ପର୍ଶ କଲା । ସରକାରଙ୍କ ଗୋତି ଶ୍ରମିକ ଉଚ୍ଛେଦ ଯୋଜନାରେ ବି: ଡି: ଓଙ୍କ ଅନୁସନ୍ଧାନ ଦ୍ୱାରା ସେହି ଗାଁ ମୋହନ ଖ୍ରୁଲକୁ ଗୋତି ଶ୍ରମିକ ଭାବରେ ଚିହ୍ନଟ କରାଗଲା ଏବଂ ତାକୁ ମୁକ୍ତ କରାଗଲା । ତାହାର ଜୀବିକା ନିର୍ବାହ ପାଇଁ ତାକୁ ତିନି ହଜାର ଟଙ୍କା ଦିଆଗଲା—ଦୁଇଟି ମଇଁଷି ପାଇଁ ୧,୮୦୦ ଟଙ୍କା ଶଗଡ଼ ପାଇଁ ୧,୦୦୦ ଟଙ୍କା ଏବଂ ଗୁହାଳ ପାଇଁ ୨୦୦ ଟଙ୍କା । ଇନ୍‌ସୁରାନସ୍ ପାଇଁ ଟ ୪୯.୫୦ ପଇସା । ମୁକ୍ତ ହେବାପରେ ମୋହନ ଏବଂ ତା ସ୍ତ୍ରୀ ଲାଗି ପଡ଼ିଲେ ନିଜର କାର୍ଯ୍ୟରେ । ସେ ଆଉ ଏବେ ଗୋତି ଶ୍ରମିକ ନୁହେଁ । ସେ ଅନ୍ୟମାନଙ୍କ ପରି ନିଜେ ନିଜର ଶଗଡ଼ ଚଳାଇ ବେଶ ଦୁଇ ପଇସା କମାଇ ପାରିଛି । ଦିନକୁ ଶଗଡ଼ ବୁଲାଇ ଅତି କମ୍‌ରେ ଶହେରୁ ଦୁଇଶହ ଟଙ୍କା ରୋଜଗାର କରୁଛି । ପିଲାମାନଙ୍କୁ ମଣିଷ କରିବା ପାଇଁ ଗାଁ ସ୍କୁଲ୍‌ରେ ନାମ ଲେଖାଇଛି । ଭଲ ଘର ଖଣ୍ଡିଏ କରି ବେଶ୍ ଆନନ୍ଦରେ ଅଛି । ମାଲ୍‌କାନାଗିରି ଷ୍ଟେଟ୍ ବ୍ୟାଙ୍କରେ ୫ ହଜାର ଟଙ୍କା ଜମା ରଖି ସାରିଲାଣି । ମଇଁଷି ସାଙ୍ଗକୁ ଗୋଟାଏ ଦୁଧିଆଳି ଗାଈ ଏବଂ ହଳେ ବଳଦ କିଣି ଗତବର୍ଷ ୨ ଏକର ଜମି ଭାଗ ଚାଷ ମଧ୍ୟ କରିଥିଲା । ଏ ବର୍ଷ ଏକ ଏକର ଜମି କିଣିଛି । ମୋହନ୍. ଦେଇ ଆଉ ଏକ ଗୋତି ଶ୍ରମିକ ନୁହେଁ। ଏବେ ଅନ୍ୟମାନଙ୍କ ପରି ସେ ମଧ୍ୟ ଜଣେ ଥିଲାବାଲା ଲୋକ ଭାବରେ ପରିଚିତ । ଗାଁରେ ସଭା ସମିତିରେ ସରକାରଙ୍କ ଯୋଜନାକୁ ସଫଳ କରିବା ପାଇଁ, ଗାଁ ଲୋକଙ୍କୁ ବୁଝାଉଥାଏ । ସମୟେ ସମୟେ ବି: ଡି: ଓ: ଏବଂ ଅନ୍ୟ ଅଧିକାରୀମାନେ ଆସିଲେ ମୋହନ ଖ୍ରୁଲର ଉଦାହରଣ ଦେଇ ବୁଝାଇଥାଆନ୍ତି । କେହି ଆଉ ଏବେ ମୋହନ ଖ୍ରୁଲକୁ ମୋନ୍ ବୋଲି ଡାକୁ ନାହାନ୍ତି । ମୋହନ ବାବୁ ବୋଲି ଡାକୁଛନ୍ତି । ମୋହନ ବାବୁ ଏବେ ପ୍ରୌଢ଼ ଶିକ୍ଷା ମାଧ୍ୟମରେ ନିଜର ଦସ୍ତଖତ କରି ଶିଖିଲାଣି । ପିଲାଙ୍କ ଛବି ବହି ପଢ଼ି ପାରୁଛି । ନିଜର ପୁଅ ଝିଅଙ୍କ ସଙ୍ଗରେ ବସି ସଂଧ୍ୟାରେ ପଢ଼ିବା ପାଇଁ ସାମାନ୍ୟ କୁଣ୍ଠାବୋଧ କରେ ନାହିଁ । ଗାଁରେ ମୋହନ ବାବୁ କହିଲେ ସମସ୍ତେ ପ୍ରଶଂସା କରିଥାନ୍ତି ।

---

ପ୍ରମୋଦ କୁମାର ମଲ୍ଲିକ,
ଅନୁବିଭାଗୀୟ ସୂଚନା ଓ ଲୋକ ସମ୍ପର୍କ
ଅଧିକାରୀ, ମାଲକାନଗିରି, ଜି–କୋରାପୁଟ ।

# ସମ୍ବାଦ ପରିକ୍ରମା

## ସମୟୋପଯୋଗୀ ସାହିତ୍ୟ ସୃଷ୍ଟି କରି ଜନଚେତନା ଓ କର୍ମଶକ୍ତିକୁ ଜାଗ୍ରତ କରାଯାଉ ।

—ରାଜ୍ୟପାଳ ଶ୍ରୀ ଶର୍ମା

କବି, ଲେଖକ ଓ ସାହିତ୍ୟିକମାନେ ସେମାନଙ୍କର ଲେଖନୀ ସୃଜନା କରି ସମୟୋପଯୋଗୀ ସାହିତ୍ୟ ସୃଷ୍ଟି କରି ମାନବ ମନରେ ଚେତନା ଓ ତାଂର ଅନ୍ତର୍ନିହିତ କର୍ମ ଶକ୍ତିକୁ ଜାଗ୍ରତ କରି ପାରିଲେ ସମାଜରେ ଦେଖା ଦେଉଥିବା ବିଭିନ୍ନ ସମସ୍ୟାକୁ ସମାଧାନ କରାଯାଇ ପାରିବ ବୋଲି ଶ୍ରୀ ଯଜ୍ଞଦତ୍ତ ଶର୍ମା ସମ୍ପ୍ରତି ମତ ପ୍ରକାଶ କରିଛନ୍ତି ।

କଟକ ଜିଲ୍ଲାର ଜାରକା ଠାରେ ଗୋକର୍ଣ୍ଣିକା ସାହିତ୍ୟ ସମାଜ ଆନୁକୂଲ୍ୟରେ ଆୟୋଜିତ ହୋଇଥିବା କବି ସମ୍ମିଳନୀ ଓ ମୁଖପତ୍ର "ଗୋକର୍ଣ୍ଣିକା"ର ୧୦୦ ତମ ପ୍ରକାଶନ ସମାରୋହର ସନ୍ଧ୍ୟା ଅଧିବେଶନରେ ଓଡ଼ିଶାର ରାଜ୍ୟପାଳ ଶ୍ରୀ ଶର୍ମା ମୁଖ୍ୟ ଅତିଥି ଭାବେ ଯୋଗ ଦେଇ କବି, ଲେଖକ, ସାହିତ୍ୟ ସ୍ରଷ୍ଟାମାନଙ୍କୁ ଓ ଉପସ୍ଥିତ ଯୁବ ସମାଜକୁ ଉଦ୍‌ବୋଧନ ଦେଇଥିଲେ ।

ଓଡ଼ିଶାର ଗରିମାମୟ ଐତିହ୍ୟ ଓ ସଂସ୍କୃତିର ଧାରାକୁ ଉଜ୍ଜୀବିତ ରଖିବା ସଙ୍ଗେ ସଙ୍ଗେ ଆଜିର ସାମାଜିକ ଘାତ ପ୍ରତିଘାତକୁ ଅନୁଭବ ଓ ଅନୁଧ୍ୟାନ କରି ତାହାର ନିଦାନ ନିମନ୍ତେ ଆନ୍ତରିକ ପ୍ରୟାସ କରାଯିବା ଉପରେ ଶ୍ରୀ ଶର୍ମା ଗୁରୁତ୍ୱ ଆରୋପ କରିଥିଲେ । ଦେଶର ସଂହତି ପ୍ରତି ଐକାନ୍ତିକ ଭାବର ଅଭାବ ଓ ମୂଲ୍ୟବୋଧର ଅବକ୍ଷୟ ପ୍ରତି ସମାଜ ବିଶେଷ କରି ଲେଖକମାନେ ସଚେତ ରହିବାକୁ ପରାମର୍ଶ ଦେଇ ଶ୍ରୀ ଶର୍ମା କହିଥିଲେ ଯେ ଦେଶପ୍ରେମ ଓ ସମାଜର ପ୍ରଗତି ନିମନ୍ତେ ଯୁବ ସମାଜକୁ ଉଦ୍‌ବୁଦ୍ଧ କରିବାର ବିରାଟ ଦାୟିତ୍ୱ ସମସ୍ତଙ୍କ ଆଗରେ ଏକ ବିରାଟ ଆହ୍ୱାନ ହୋଇ ଦଣ୍ଡାୟମାନ । ସମାଜରେ ନାରୀକୁ ନ୍ୟାଯ୍ୟ ଅଧିକାର ଦେଇ ଏକ ଉନ୍ନତ ସମାଜ ଗଠନ ସମସ୍ତଙ୍କର ଲକ୍ଷ୍ୟ ହେବା ଉଚିତ ବୋଲି ରାଜ୍ୟପାଳ ମଧ୍ୟ ପରାମର୍ଶ ଦେଇଥିଲେ । କବିମାନେ ସେମାନଙ୍କର ସୃଜନୀ ଶକ୍ତି ଓ ଲେଖନୀ ... ସମାଜକୁ ଯୁଗେ ଯୁଗେ ଚେତନା ପ୍ରଦାନ କରି ଦିଗ୍‌ଦର୍ଶନ ... ଆସିଥିବାରୁ ଏହି ସାହିତ୍ୟ ସଙ୍ଗମର ଜ୍ୟୋତିର୍ମୟ ... ଚେତନା ଜାଗ୍ରତ କରିବାରେ ନିଶ୍ଚୟ ବଳିଷ୍ଠ ଭୂମିକା ଗ୍ରହଣ ... ବୋଲି ସେ ଆଶା କରନ୍ତି ବୋଲି ରାଜ୍ୟପାଳ କହିଥିଲେ ।

ସଂସ୍କୃତି ମନ୍ତ୍ରୀ ଶ୍ରୀ ଶରତ କୁମାର କର ନିକଟରେ ... ଅନୁଷ୍ଠିତ ହୋଇ ଯାଇଥିବା ସାହିତ୍ୟ ସମାରୋହ ଓ ... ସର୍ବ ଭାରତୀୟ ସ୍ତରରେ ଆମର ଐତିହ୍ୟ, ସାହିତ୍ୟ ଓ ... ଉପସ୍ଥାପିତ କରିବାରେ ସହାୟକ ହୋଇଛି ବୋଲି ପ୍ରକାଶ ... ସହିତ ହୀନମନ୍ୟତା ତ୍ୟାଗ କରିବାକୁ ... ଦେଇଥିଲେ ।

ସମ୍ମାନୀୟ ଅତିଥି ସାଧାରଣ ଅଭିଯୋଗ ଓ ପେନ୍‌ସନ୍ ... ମନ୍ତ୍ରୀ ଡଃ ପ୍ରସନ୍ନ କୁମାର ପାଟ୍ଟଶାଣୀ ରାଜ୍ୟପାଳଙ୍କର ... ସଂସ୍କୃତି, କଳା ଓ ସାହିତ୍ୟ ପ୍ରତି ପ୍ରଗାଢ଼ ଅନୁରକ୍ତି ... ଏହାର ପ୍ରସାର ଦିଗରେ ବିଶେଷ ସହାୟକ ହୋଇଛି ବୋଲି ... କରିଥିଲେ । ଗୋକର୍ଣ୍ଣିକା ପତ୍ରିକା ଓଡ଼ିଶାର ସାହିତ୍ୟକୁ ... କରିବାରେ ମହତ୍ୱ ପ୍ରତିଷ୍ଠା କରୁଛି ବୋଲି ... କରିଥିଲେ ।

ଗୋକର୍ଣ୍ଣିକା ସାହିତ୍ୟ ସମାଜର ଅଭ୍ୟର୍ଥନା ସମିତିର ... ତଥା ଯୋଜନା ଓ ସମନ୍ୱୟ ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ... ପ୍ରକାଶନଠାରୁ ଆରମ୍ଭ କରି ବିକ୍ରୟ ପର୍ଯ୍ୟନ୍ତ ଦେଖା ... ବିଭିନ୍ନ ପ୍ରତିବନ୍ଧକ ଉପରେ ଆଲୋକପାତ କରି ଏସବୁକୁ ... କରିବା ବିନା ସାହିତ୍ୟ ସାଧନା ପାଇଁ ପ୍ରକୃଷ୍ଟ ବାତାବରଣ ... ହୋଇ ପାରିବ ନାହିଁ ବୋଲି ମତ ପ୍ରକାଶ କରିଥିଲେ ।

ଅଭ୍ୟର୍ଥନା ସମିତିର କାର୍ଯ୍ୟନିର୍ବାହୀ ସଭାପତି ... ସଭା ସଦସ୍ୟ ଶ୍ରୀ ଗୁରୁଚରଣ ଟିକାୟତ ଓ ଅଭ୍ୟର୍ଥନା ସମିତିର ... ଉପ ସଭାପତି ତଥା କୋଣାର୍କ ଟେଲିଭିଜନ ...

ଶ୍ରୀ ଜେଣ୍ଟୁ ଦାସ ସେମାନଙ୍କର ସ୍ୱାଗତ ଭାଷଣରେ ଶିକ୍ଷା ଓ ସଂସ୍କୃତିର ଉନ୍ନତି ପାଇଁ ସଂଗ୍ରାମ ଆରମ୍ଭ ହୋଇଛି ସେଥିରେ ଏହି ଅଞ୍ଚଳର ଯୁବଗୋଷ୍ଠୀ ଓ କର୍ମ ପ୍ରବଣ ଯୁବ ଗୋଷ୍ଠୀର ଉଦ୍ୟମ ଓ ସହଯୋଗ ଆଶା କରିବା ସହିତ ଏହି ଅଞ୍ଚଳର ପ୍ରଗତି ପାଇଁ ବିଭିନ୍ନ ଦାବୀ ଗୁଡ଼ିକ ଉପସ୍ଥାପିତ କରିଥିଲେ ।

ଗୋକର୍ଣ୍ଣିକା ସାହିତ୍ୟ ସମାଜର ସମ୍ପାଦକ ଶ୍ରୀ ଜେନା ସାହିତ୍ୟ ସମାଜର ବିବରଣୀ ଉପସ୍ଥାପିତ କରିଥିଲେ ଓ ଗୋକର୍ଣ୍ଣିକା ସାହିତ୍ୟ ସଭାପତି ଶ୍ରୀ ବୈକୁଣ୍ଠ ରଥ ଏହି ସଭାରେ ସଭାପତିତ୍ୱ କରିଥିଲେ । ଉପ ସଭାପତି ଶ୍ରୀ ଏନ୍: ସି: ସାହୁ ଧନ୍ୟବାଦ ଅର୍ପଣ କରିଥିଲେ ।

ରାଜ୍ୟପାଳ ଏହି ଅନୁଷ୍ଠାନର ପ୍ରତିଷ୍ଠାତା ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀଙ୍କୁ ତାଙ୍କର ଶିଶୁ ସାହିତ୍ୟ କ୍ଷେତ୍ରରେ ବଳିଷ୍ଠ ଅବଦାନ ପାଇଁ ଶ୍ରୀ ନିରଞ୍ଜନ ପାଢ଼ୀ ଓ ଶ୍ରୀ ବୈରାଗୀ ବିଶ୍ୱାଳଙ୍କୁ ସାହିତ୍ୟ କ୍ଷେତ୍ରର ବିଶେଷ ଅବଦାନ ନିମନ୍ତେ ମାନପତ୍ର ପ୍ରଦାନ କରି ସମ୍ବର୍ଦ୍ଧିତ କରିଥିଲେ ।

## ଆଦିବାସୀ ଛାତ୍ରଛାତ୍ରୀମାନଙ୍କୁ ଉପଯୁକ୍ତ ଶିକ୍ଷା ଓ ତାଲିମ ନିମନ୍ତେ ମୁଖ୍ୟମନ୍ତ୍ରୀଙ୍କ ଗୁରୁତ୍ୱ ଆରୋପ ।

ରାଜ୍ୟର ଆଦିବାସୀ ଛାତ୍ରଛାତ୍ରୀମାନଙ୍କୁ ଉପଯୁକ୍ତ ଶିକ୍ଷା ଓ ତାଲିମ ପ୍ରଦାନ କରିବା ଦ୍ୱାରା ସେମାନଙ୍କୁ ସମାଜର ମୁଖ୍ୟ ସ୍ରୋତକୁ ଅଣାଯାଇ ପାରିବ ବୋଲି ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ମତବ୍ୟକ୍ତ କରିଛନ୍ତି ।

ସମ୍ପ୍ରତି ସଚିବାଳୟ ସମ୍ମିଳନୀ କକ୍ଷରେ ଅନୁଷ୍ଠିତ ଆଦିବାସୀ ପରାମର୍ଶଦାତା କମିଟିର ଏକ ବୈଠକରେ ଭାଷଣ ଦେଇ ମୁଖ୍ୟମନ୍ତ୍ରୀ କହିଲେ ଯେ, ସରକାରୀ ଚାକିରିରେ ଥିବା ସଂରକ୍ଷଣ ବ୍ୟବସ୍ଥା ଅନୁଯାୟୀ ଆଦିବାସୀମାନଙ୍କ ପାଇଁ ଉଦ୍ଦିଷ୍ଟ ପଦ ପୂରଣ ଉପଯୁକ୍ତ ପ୍ରାର୍ଥୀମାନଙ୍କ ଅଭାବକୁ ପୂରଣ କରାଯାଇପାରୁ ନଥିବା କ୍ଷୋଭର ବିଷୟ. ସେ କହିଲେ ଯେ, ଆଦିବାସୀ ଛାତ୍ରଛାତ୍ରୀମାନଙ୍କୁ ଉପଯୁକ୍ତ ତାଲିମ ଦ୍ୱାରା ଯୋଗ୍ୟ କରିବାର ଦାୟିତ୍ୱ ନିଜେ ସରକାର ବହନ କଲେ ଏହି ସମସ୍ୟାର ସମାଧାନ ହୋଇପାରିବ । କୋରାପୁଟ ଜିଲ୍ଲାରେ ଶତକଡା ୫୦ ଭାଗ ଆଦିବାସୀ ରହୁଥିଲାବେଳେ ସେମାନଙ୍କ ଭିତରେ ସାକ୍ଷରତା ହାର ମାତ୍ର ଶତକଡା ୧୦ ଭାଗ ଓ ସ୍ତ୍ରୀ ଶିକ୍ଷା ହାର ଶତକଡା ୨ ଭାଗ ହୋଇଥିବାରୁ ସେମାନେ ସରକାରୀ ଚାକିରି ପାଇଁ ଥିବା ସଂରକ୍ଷଣ ସୁଯୋଗରୁ ବଞ୍ଚିତ ହେଉଛନ୍ତି । କୋରାପୁଟ ଜିଲ୍ଲାର ଆଦିବାସୀ ଯୁବକ ବଳିଷ୍ଠ ଓ ସ୍ୱାସ୍ଥ୍ୟବାନ ହୋଇଥିବାରୁ ପୋଲିସ ବିଭାଗର କନ୍‌ଷ୍ଟେବଲ୍ ଚାକିରି ପାଇଁ ଉପଯୁକ୍ତ ହୋଇଥିଲେ ବି ଆଦିବାସୀ ପ୍ରାର୍ଥୀଙ୍କ ବିନା ବିଘ୍ନରେ ନିଯୁକ୍ତି ଦିଆଯାଇପାରିବ ନାହିଁ । ଆଦିବାସୀ ପ୍ରାର୍ଥୀମାନଙ୍କ ପାଇଁ ସ୍ୱତନ୍ତ୍ର ନିଯୁକ୍ତି ଅଭିଯାନ ସମ୍ପର୍କରେ ଅସନ୍ତୋଷ ପ୍ରକାଶ କରି ମୁଖ୍ୟମନ୍ତ୍ରୀ ଏ ସମ୍ପର୍କରେ ବିଭାଗ ତରଫରୁ ଗ୍ରହଣ କରାଯାଇଥିବା କାର୍ଯ୍ୟକ୍ରମ ସମ୍ପର୍କରେ ଏକ ବିବରଣୀ ବିଭାଗୀୟ ଶାସନ ସଚିବ ମୁଖ୍ୟ ଶାସନ ସଚିବଙ୍କ ଜରିଆରେ ମୁଖ୍ୟମନ୍ତ୍ରୀଙ୍କୁ ଜଣାଇବା ପାଇଁ ନିର୍ଦ୍ଦେଶ ଦେଇଥିଲେ ।

ଏହି ବୈଠକରେ ବିଭାଗୀୟ ମନ୍ତ୍ରୀ ଶ୍ରୀ ଘାସିରାମ ମାଝୀ, ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଛୋଟରାୟ ମାଝୀ, ଜଙ୍ଗଲ ବିଭାଗ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ମଙ୍ଗଳା କିଷାନ, ଜଳସେଚନ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ରଘୁନାଥ ହେମ୍ବ୍ରମ, ବିଧାୟକ ସର୍ବଶ୍ରୀ ବଳଭଦ୍ର ମାଝୀ, ବୃନ୍ଦାବନ ମାଝୀ, ରବି ଦେହୁରୀ, ଅଖିଳ ସାଉଁଟା, ଗୁରୁବାରୁ ମାଝୀ, ରାମମୂର୍ତ୍ତି ଗମାଙ୍ଗୋ, ସ୍ୱତନ୍ତ୍ର ନିମନ୍ତ୍ରିତ ସଭ୍ୟ ଅଧ୍ୟାପକ ହାଡ଼ିବନ୍ଧୁ ମିର୍ଦ୍ଧାଙ୍କ ସମେତ ରାଜ୍ୟ ମୁଖ୍ୟ ଶାସନ ସଚିବ ଶ୍ରୀ ରମାକାନ୍ତ ରଥ, ଉନ୍ନୟନ କମିଶନର ଶ୍ରୀ ସୁନ୍ଦରରାଜନ୍, କୃଷି ଓ ଗ୍ରାମୋନ୍ନୟନ କମିଶନର ଶ୍ରୀମତୀ ଚନ୍ଦ୍ରମଣି ସ୍ୱାମୀ, ବିଭାଗୀୟ ପ୍ରମୁଖ ସଚିବ ଶ୍ରୀ ଡ଼ି: ପି: ଭଟ୍ଟାଚାର୍ଯ୍ୟ ଓ ରାଜ୍ୟ ସରକାରଙ୍କ ବହୁ ବରିଷ୍ଠ ଅଧିକାରୀ ଉପସ୍ଥିତ ରହି ଆଲୋଚନାରେ ଭାଗ ନେଇଥିଲେ ।

## ଜୟଦେବଙ୍କ କାବ୍ୟକୃତି ଉପରେ ଗବେଷଣା କରି ତଥ୍ୟ ପ୍ରକାଶ କର

—ବିଜୁ ପଟ୍ଟନାୟକ

ଓଡ଼ିଆ ଜାତି ତା'ର ଶୌର୍ଯ୍ୟ, ବୀର୍ଯ୍ୟ, କାବ୍ୟ, କବିତା ଓ ନୃତ୍ୟଗୀତ ପାଶୋରି ଯାଇଛି । ଓଡ଼ିଶା ଆଜି ତଳେ ପଡ଼ିରହିଛି । ଓଡ଼ିଆ ଜାତିକୁ ଉପରକୁ ଉଠାଇବାକୁ ହେଲେ ତା'କୁ ତା'ର ଅତୀତ ଗୌରବ ସ୍ମରଣ କରାଇବାକୁ ହେବ ଏବଂ ଇତିହାସର ପୃଷ୍ଠା ଓଲଟାଇବାକୁ ହେବ । ଶୌର୍ଯ୍ୟ ବୀର୍ଯ୍ୟର ପ୍ରତୀକ ଖାରବେଳ, ନେତାଜୀ ସୁଭାଷ ବୋଷଙ୍କ ଭଳି କାବ୍ୟ କବିତା ଓ ନୃତ୍ୟଗୀତର ପ୍ରତୀକ ମହାକବି ଜୟଦେବଙ୍କୁ ମଧ୍ୟ ସ୍ମରଣ କରିବାକୁ ହେବ ।

ମଇ ମାସ ୬ ତାରିଖରେ ସ୍ଥାନୀୟ ସୂଚନା ଭବନରେ ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ଆୟୋଜିତ ଜୟଦେବ ଜୟନ୍ତୀ ପାଳନ ଓ "ଓଡ଼ିଆ ସାହିତ୍ୟ ସଂସ୍କୃତିରେ ଜୟଦେବ" ଶୀର୍ଷକ ଆଲୋଚନା ଉଦ୍‌ଘାଟନ କରି ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ଉପରୋକ୍ତ ମତେ ମତବ୍ୟକ୍ତ କରିଥିଲେ । କବି ଜୟଦେବଙ୍କ ଜନ୍ମସ୍ଥାନକୁ ନେଇ ଉଠିଥିବା ବିବାଦକୁ ନାପସନ୍ଦ କରି ସେ କହିଲେ କେବଳ ଜନ୍ମସ୍ଥାନକୁ ନେଇ କେହି କେବେ ବଡ଼ ହୋଇପାରେନା । କାର୍ଯ୍ୟକଳାପ ହିଁ ଜଣକୁ ବଡ଼ କରିଥାଏ । ମାତ୍ର କେଇବର୍ଷ ତଳେ ସୁବାଷ ବୋଷ ଏଇ ଓଡ଼ିଶାରେ ଜନ୍ମିଥିଲେ ମଧ୍ୟ ତାଙ୍କୁ ଆମେ ନିଜର କରି ରଖିପାରିଲୁନି । ଶତାଧିକ ବର୍ଷ ତଳର ଜୟଦେବ କବିଙ୍କୁ ଖାଲି ଓଡ଼ିଆ ବୋଲି କହିଦେଲେ ହେବନି, ତାଙ୍କ କାବ୍ୟ କବିତା, ଚିନ୍ତାଧାରା ଚର୍ଚ୍ଚାକରି ତାଙ୍କ ଜନ୍ମସ୍ଥାନ ଓ କାର୍ଯ୍ୟକ୍ଷେତ୍ର ସଂକ୍ରାନ୍ତରେ ଗବେଷଣା କରି ତଥ୍ୟାବଳୀ ଉପସ୍ଥାପନ କରାଯିବା ଉପରେ ମୁଖ୍ୟମନ୍ତ୍ରୀ ଗୁରୁତ୍ୱ ଆରୋପ କରିଥିଲେ । ଇତିହାସର ଅନୁଶୀଳନ କରି ଖାରବେଳ, ଧରମା, ସୁବାସ, ଜୟଦେବଙ୍କ ଭଳି ବରପୁତ୍ରମାନଙ୍କ ସମ୍ପର୍କରେ ସଠିକ୍ ତଥ୍ୟାବଳୀ ପ୍ରସ୍ତୁତ କରିବା ପାଇଁ ଶ୍ରୀ ପଟ୍ଟନାୟକ ଆହ୍ୱାନ ଜଣାଇଥିଲେ ।

ସଂସ୍କୃତି, ସୂଚନା ଓ ଲୋକସମ୍ପର୍କ, ମନ୍ତ୍ରୀ ଶରତ କୁମାର କର କହିଲେ ବିଦେଶରେ ଜୟଦେବଙ୍କ କୃତି ସମ୍ପର୍କରେ ବହୁ ଗବେଷଣା ହେଉଥିଲେ ମଧ୍ୟ ଓଡ଼ିଶାରେ ଆଶାନୁରୂପ ଭାବେ ତାଙ୍କ କାବ୍ୟ କବିତା ସଂକ୍ରାନ୍ତରେ ଚର୍ଚ୍ଚା ହୋଇନାହିଁ । ନେତାଜୀ

ସୁଭାଷ ବୋଷ ଭାରତକୁ ଓଡ଼ିଶାର ମହାଦାନ ବୋଲି ବର୍ଣ୍ଣୀୟ ନେତୃବୃନ୍ଦ ଏବେ ଘୋଷଣା କରୁଛନ୍ତି । ସେହିପରି ଦିନ ଆସିବ ସେମାନେ ସ୍ୱୀକାର କରିବେ ଯେ କବି ଜୟଦେବ ବିଶ୍ୱ ସାହିତ୍ୟ ଜଗତକୁ ଓଡ଼ିଶାର ମହାନ୍ ଅବଦାନ । ସେଥିପାଇଁ ଆମକୁ କ୍ଷେତ୍ର ପ୍ରସ୍ତୁତ କରିବାକୁ ପଡ଼ିବ । ଆମ ସାହିତ୍ୟିକ ଓ ଐତିହାସିକମାନେ ଏ ସଂପର୍କରେ ଗବେଷଣାତ୍ମକ ନିବନ୍ଧମାନ ପ୍ରକାଶ କରନ୍ତୁ ବୋଲି ଶ୍ରୀ କର ଆହ୍ୱାନ ଜଣାଇଥିଲେ । ମଣିଷ ବଞ୍ଚି ରହିବାକୁ ଇସ୍ପାତ୍ କାରଖାନା ଦରକାର । ମାତ୍ର ଜାତିକୁ ଯୁଗ ଯୁଗ ଧରି ବଞ୍ଚି ରହିବାକୁ ହେଲେ ଜୟଦେବ, ଉପେନ୍ଦ୍ର ଭଞ୍ଜଙ୍କ ଭଳି ସାହିତ୍ୟ ରଥୀ ଦରକାର ବୋଲି ଘନଘନ କରତାଳି ମଧ୍ୟରେ ସଂସ୍କୃତି ମନ୍ତ୍ରୀ କହିଥିଲେ ।

ଓଡ଼ିଶା ସାହିତ୍ୟ ଏକାଡେମୀ ଅଧ୍ୟକ୍ଷା ମନୋରମା ମହାପାତ୍ର ଉତ୍ସବରେ ଅଧ୍ୟକ୍ଷତା କରିଥିଲେ । ନୀଳମଣି ମିଶ୍ର ଓ ଡଃ ଭଗବାନ ପଣ୍ଡା ଜୟଦେବଙ୍କ ସଂପର୍କରେ ପାଣ୍ଡିତ୍ୟପୂର୍ଣ୍ଣ ଭାଷଣ ଦେଇଥିଲେ । ଅଧ୍ୟାପିକା ପଦ୍ମିନୀ ତ୍ରିପାଠୀ ସୁଲଳିତ କଣ୍ଠରେ ଗୀତ ଗୋବିନ୍ଦର କେତେକ ଛାନ୍ଦ ଗାନ କରିଥିଲେ । ବିନୋଦ ନାୟକ, ମଧ୍ୟ ଭାଷଣ ଦେଇଥିଲେ । ସୂଚନା ଓ ଲୋକସମ୍ପର୍କ ବିଭାଗ ପକ୍ଷରୁ ସୂଚନାଭବନରେ ଜୟଦେବଙ୍କ ସଂପର୍କରେ ଏକ ଚିତ୍ର ପ୍ରଦର୍ଶନୀ କରାଯାଇଥିଲା ।

## ସଂଗ୍ରାମ ବିନା ଦାବୀ ହାସଲ ଅସମ୍ଭବ

—ସତୀଶ ପାତ୍ର

ଗୁଡାରି ବିଜ୍ଞାପିତ ଅଞ୍ଚଳ ପରିଷଦର ପାଇକ ସାହି ପ୍ରାଥମିକ ବିଦ୍ୟାଳୟର ନବନିର୍ମିତ ଗୃହକୁ ଉତ୍କଳ ପ୍ରସଙ୍ଗ ମୁଖ୍ୟ ସମ୍ପାଦକ ସତୀଶ ପାତ୍ର ଗତ ଏପ୍ରିଲ୍ ୪ ତାରିଖରେ ଉଦ୍‌ଘାଟନ କରିଛନ୍ତି । ତାଙ୍କ ଭାଷଣ ପ୍ରସଙ୍ଗରେ ଶ୍ରୀ ପାତ୍ର କହିଲେ ସଂଗ୍ରାମ ବିନା କେହି କେବେ କୌଣସି ଦାବୀ ହାସଲ କରି ପାରିନାହିଁ । ପଛୁଆ ତଥା ଅନୁନ୍ନତ ଅଞ୍ଚଳଗୁଡ଼ିକର ଆବଶ୍ୟକୀୟ ବିକାଶ ସାଧନ ନିମନ୍ତେ ସମ୍ପୃକ୍ତ ଅଞ୍ଚଳର ଜନସାଧାରଣ ଲଢୁଆ ମନୋଭାବ ପୋଷଣ କରି କାର୍ଯ୍ୟ କରିବା ପାଇଁ ଶ୍ରୀ ପାତ୍ର ଜନସାଧାରଣଙ୍କୁ ଆହ୍ୱାନ ଦେଇଥିଲେ ।

ନଗରପାଳ ତ୍ରିପତି ପାଣିଗ୍ରାହୀ ଉତ୍ସବରେ ସଭାପତିତ୍ୱ କରିଥିଲେ । କାର୍ଯ୍ୟ ନିର୍ବାହୀ ଅଧିକାରୀ ବିଃ କୁମାର ସ୍ୱାମୀ ପାତ୍ର ସ୍ୱାଗତ ଭାଷଣ ଦେଇଥିଲେ । ରାୟଗଡ଼ା ଜିଲ୍ଲା ସୂଚନା ଓ ଲୋକ ସମ୍ପର୍କ ଅଧିକାରୀ ଏହି ଉତ୍ସବରେ ସମ୍ମାନିତ ଅତିଥିଭାବେ ଯୋଗ ଦେଇଥିଲେ । ଉଦ୍‌ଘାଟନ ଉତ୍ସବ ଶେଷରେ ସୂଚନା ଓ ଲୋକ ସମ୍ପର୍କ ବିଭାଗ ପକ୍ଷରୁ ଓଡ଼ିଆ ଚଳଚିତ୍ର "ଶଙ୍ଖମହୁରୀ" ପ୍ରଦର୍ଶିତ ହୋଇଥିଲା ।

## ରାୟଗଡ଼ାରେ ଉତ୍କଳ ପ୍ରସଙ୍ଗ ପାଠକ ସମାବେଶ

କୋରାପୁଟ ଜିଲ୍ଲା ରାୟଗଡ଼ା ସ୍ଥିତ ଠକ୍କର ବାପା, ଆଶ୍ରମ ପ୍ରାଙ୍ଗଣରେ ଗତ ଏପ୍ରିଲ ୭ୀ ତାରିଖ ସନ୍ଧ୍ୟା ସଂସଦ ଉତ୍କଳ ପ୍ରସଙ୍ଗ ପାଠକ ସମାବେଶ ହୋଇଥିଲା ।

ରାୟଗଡା ନଗରପାଳ କୃଷ୍ଣ ଚନ୍ଦ୍ର ବହ୍ମସିପାତ୍ର ସଭାପତିତ୍ୱ କରିଥିଲେ । ଉତ୍କଳ ପ୍ରସଙ୍ଗର ମୁଖ୍ୟ ସମ୍ପା ସତୀଶ ପାତ୍ର ମୁଖ୍ୟ ଅତିଥି ଭାବେ ଯୋଗ ଦେଇଥିଲେ ।

ସମ୍ପାଦିକ ସୀମାଞ୍ଚଳ ମହାପାତ୍ର, ଯୋଗେ ଗୌରୀପ୍ରସାଦ ରାଓ, ଛାତ୍ର ନେତା ବିବେକାନନ୍ଦ ସମାଜସେବୀ ମୋତିଲାଲ ଶର୍ମା S.D.M.O ଶ୍ରୀ ରାଉତରାୟ ପ୍ରମୁଖ ଆଲୋଚନାରେ ଅଂଶ କରିଥିଲେ । ଉତ୍କଳ ପ୍ରସଙ୍ଗ ବର୍ତ୍ତମାନ ବିଭିନ୍ନ ରୁଚିର ପରିବେଷଣକରି ଉଚ୍ଚମାନର ପତ୍ରିକା ରୂପେ ହୋଇପାରିଛି । ତେବେ ପତ୍ରିକାର ମୂଲ୍ୟ ଅପେକ୍ଷାକୃତ ରହିଛି ବୋଲି ବକ୍ତାମାନେ ମତାମତ ଦେବା ସାଙ୍ଗକୁ ବିଭିନ୍ନ ପତ୍ରିକା ଏଜେଣ୍ଟମାନଙ୍କୁ ଉତ୍କଳ ପ୍ରସଙ୍ଗ ବିକ୍ରୀ କରିବା ସୁବି ଦେବାକୁ ପ୍ରସ୍ତାବ ଦେଇଥିଲେ ।

ବକ୍ତାମାନଙ୍କ ମତାମତର ଉତ୍ତର ଦେଇ ମୁଖ୍ୟ ଅତିଥି ଶ୍ରୀ ପାତ୍ର କହିଲେ ଯେ, ଜନସାଧାରଣଙ୍କ ମତାମତକୁ ସମ୍ମାନ ଦେଇ ସେମାନଙ୍କ ପ୍ରସ୍ତାବ ଅନୁସାରେ କାର୍ଯ୍ୟ କରିବା ଏହି ପାଠ ସମାବେଶର ଲକ୍ଷ୍ୟ ।

ଜିଲ୍ଲା ସୂଚନା ଓ ଲୋକ ସମ୍ପର୍କ ଅଧିକାରୀ ରାମକୃଷ୍ଣ ମାଝି ଧନ୍ୟବାଦ ଅର୍ପଣ କରିଥିଲେ ।

## ମାଣିଆଁବନ୍ଧ ଅଞ୍ଚଳରେ ଶିକ୍ଷାର ପ୍ରସାର ପାଇଁ ଶିକ୍ଷାମନ୍ତ୍ରୀ ଶ୍ରୀ ମାଝିଙ୍କ ପ୍ରତିଶ୍ରୁତି

ବଡ଼ସା ଅଞ୍ଚଳରେ ଶିକ୍ଷାର ପ୍ରସାର ପାଇଁ ବିଶେଷ ଧ ଦିଆଯିବ ବୋଲି ଶିକ୍ଷାମନ୍ତ୍ରୀ ଶ୍ରୀ ଚୈତନ୍ୟ ପ୍ରସାଦ ମାଝି କହିଛନ୍ତି । ଶିକ୍ଷାମନ୍ତ୍ରୀ ଶ୍ରୀ ମାଝୀ ଗତ ୭ ତାରିଖ ଦି ମାଣିଆଁବନ୍ଧ କଲେଜ ଗୃହର ଭିତ୍ତିପ୍ରସ୍ତର ସ୍ଥାପନ କରିଥିଲେ । ଏ ଉତ୍ସବ ଉପଲକ୍ଷେ ଏକ ବଡ଼ଧରଣର ସାଧାରଣସଭାରେ ଆଠଗଡ ବିଧାୟକ ଶ୍ରୀ ରଣେନ୍ଦ୍ର ପ୍ରତାପ ସ୍ୱାଇଁ ଆଠଗଡ଼ ତିଗିରିଆ ଅଞ୍ଚଳର ଅଧ୍ୟକ୍ଷ ଶ୍ରୀ ପ୍ରମଥ ମିଶ୍ର ବଡ଼ସା ତହସିଲଦାର, ବି.ଡି.ଓ. ପରିଚାଳନା କମିଟିର ସଭ୍ୟବୃନ୍ଦ, ବିଶିଷ୍ଟ ବ୍ୟକ୍ତି ଏବଂ ବହୁ ଜନସାଧାରଣ ଉପସ୍ଥିତ ଥିଲେ ।

ଶିକ୍ଷା ମନ୍ତ୍ରୀ କଲେଜ ନିକଟରେ ପହଞ୍ଚିବା ମାତ୍ରେ ସେହି କଲେଜର କାର୍ଯ୍ୟକାରୀ ସଭାପତି ଶ୍ରୀ ଅଦ୍ୱୈତ ପଣ୍ଡା, ସମ୍ପାଦକ ଶ୍ରୀତ୍ରିଲୋଚନ ମିଶ୍ର ଏବଂ କୋଷାଧ୍ୟକ୍ଷ ଶ୍ରୀ କୈଳାସଚନ୍ଦ୍ର ଜେନାଙ୍କ ସମେତ ପରିଚାଳନାସମିତିର ସଭ୍ୟାବୃନ୍ଦ ଫୁଲମାଳ ଦେଇ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇଥିଲେ । କଲେଜ ଅଧ୍ୟ ଅତିଥିମାନଙ୍କର ପରିଚୟ ପ୍ରଦାନ ପରେ ସଭାକାର୍ଯ୍ୟ ଆରମ୍ଭ ହୋଇଥିଲା । ମନ୍ତ୍ରୀ ଶ୍ରୀ ଚୈତନ୍ୟ ପ୍ରସାଦ ମାଝୀ କହିଥିଲେ ଯେ ମାଣିଆଁବନ୍ଧ ଅଞ୍ଚଳରେ ଶିକ୍ଷାର ବିକାଶ ପାଇଁ ସରକାରଙ୍କ ପକ୍ଷରୁ ସାହାଯ୍ୟ ସହଯୋଗ କରାଯିବ । ବିଧାୟକ ଶ୍ରୀ ରଣେନ୍ଦ୍ର ପ୍ରତାପ ସ୍ୱାଇଁ କହିଥିଲେ ଯେ କଂଗ୍ରେସ ଶାସନ କାଳରେ ଏ ଅଞ୍ଚଳରେ ଶିକ୍ଷାର ପ୍ରସାର ପାଇଁ ଦୃଷ୍ଟି ଦିଆଯାଇ ନ ଥିଲା । ଜନତା ସରକାରଙ୍କ ଅମଳରେ ଶିକ୍ଷାର ପ୍ରସାର ପାଇଁ ବହୁ

...ଯାଇଛି । ମାଣିଆଁବନ୍ଧ କଲେଜ ଗୃହ ନିର୍ମାଣ ପାଇଁ ...ଟି ୪୫ ହଜାର ଟଙ୍କା ସରକାରୀ ଅନୁଦାନ ...ଯାଇଛି ।

...ନ ଉଦ୍‌ଘାଟନ ଉତ୍ସବ ପୂର୍ବରୁ ମନ୍ତ୍ରୀ ଶ୍ରୀ ମାଝୀ ...ନପୁର ଡାକ ବଙ୍ଗଳାଠାରେ ୧୭ ଶହ ଲୋକଙ୍କୁ ବାର୍ଦ୍ଧକ୍ୟ ଭତ୍ତା ...ଣ କରିଥିଲେ । ସେହିଦିନ ରାତିରେ ଶିକ୍ଷାମନ୍ତ୍ରୀ ମାନପୁର ...ସ୍ୱତୀ ବିଦ୍ୟାଳୟ ପୁରସ୍କାର ବିତରଣ ଉତ୍ସବରେ ଯୋଗ ...ଥିଲେ ।

## ଶିକ୍ଷାର ଗୁଣାତ୍ମକ ବିକାଶ ଉପରେ ଗୁରୁତ୍ୱ

...ସ୍ଥ ସମାଜ ଗଠନ କରିବା ପାଇଁ ଶିକ୍ଷାର ଗୁଣାତ୍ମକ ବିକାଶ ...ଜି ଅପରିହାର୍ଯ୍ୟ ହୋଇପଡ଼ିଛି ବୋଲି ଶିକ୍ଷା ରାଷ୍ଟ୍ରମନ୍ତ୍ରୀ ଡାକ୍ତର ...ମତୀ କମଳାଦାସ ମତପ୍ରକାଶ କରିଛନ୍ତି ।

...ପ୍ରିଲ ୨୯ ତାରିଖରେ ତିର୍ତ୍ତୋଲ ବାଳିକା ଉଚ୍ଚ ବିଦ୍ୟାଳୟର ...ନ୍ତୀ ଉତ୍ସବରେ ମୁଖ୍ୟବକ୍ତା ଭାବରେ ଯୋଗଦେଇ ସେ କହିଲେ ...ଜ୍ୟରେ ଶିକ୍ଷାନୁଷ୍ଠାନର ବୃଦ୍ଧି ଘଟୁଥିଲେ ମଧ୍ୟ ବାସ୍ତବ ...ଙ୍କ ସଂଖ୍ୟା ବୃଦ୍ଧି ପାଇନାହିଁ । ବିଶେଷକରି ଶିକ୍ଷାନାମରେ ...ଶୋଷଣ କରାଯାଇ ଶିକ୍ଷାର ଗୁଣାତ୍ମକ ବିକାଶ ପ୍ରତି ଅନ୍ତରାୟ ...ଷ୍ଟି କରାଯାଉଛି । ଫଳରେ ବ୍ୟବସାୟିକ ଶିକ୍ଷା ଯୋଗୁଁ ...ଜରେ ହିଂସା, ବିଦ୍ୱେଷ ଓ ପ୍ରବଞ୍ଚନା ବୃଦ୍ଧି ପାଇ ପାରିପାର୍ଶ୍ୱିକ ...ବେଶକୁ କଳୁଷିତ କରି ଦେଉଛି । ତେଣୁ ସାମ୍ପ୍ରତିକ ପରିସ୍ଥିତିରେ ...ସୁସ୍ଥ ସମାଜ ଗଠନ କରିବା ପାଇଁ ଶିକ୍ଷାର ଗୁଣାତ୍ମକ ବିକାଶ ...ତି ସର୍ବାଦୌ ଧ୍ୟାନ ଦେବାକୁ ସେ ପରାମର୍ଶ ଦେଇଥିଲେ ।

...ପ୍ରାକ୍ତନ ଶିକ୍ଷକ ଶ୍ରୀ ପୂର୍ଣ୍ଣଚନ୍ଦ୍ର ମହାପାତ୍ରଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ...ସଭାରେ ସ୍କୁଲ ପ୍ରଧାନଶିକ୍ଷୟିତ୍ରୀ ଶ୍ରୀମତୀ ସ୍ନେହ ମହାପାତ୍ର ...ଳୟର ଅତୀତ ଇତିହାସ ସମ୍ପର୍କରେ ସୂଚନା ...ଥିଲେ ।

...ସମ୍ମାନିତ ଅତିଥି ଭାବରେ ଯୋଗ ଦେଇ ରାଜ୍ୟ ...ଜନାବୋର୍ଡର ସଭ୍ୟ ଶ୍ରୀ ପ୍ରତାପଚନ୍ଦ୍ର ମହାନ୍ତି କହିଥିଲେ ଯେ ...ଳାମାନଙ୍କୁ ସମାଜ ଗଠନରେ ଉପଯୁକ୍ତ ସୁଯୋଗ ଦିଆଯିବା ...ଚିତ । ରକ୍ଷଣଶୀଳ ପ୍ରଭାବରୁ ମହିଳାମାନେ ମୁକ୍ତ ରହିବା ...ଚିତ ।

...ନ୍ୟମାନଙ୍କ ମଧ୍ୟରେ, ଜିଲ୍ଲା ପ୍ରକଳ୍ପ ଅଧିକାରୀ ଶ୍ରୀ ଜେ. ଏନ୍. ତ୍ରିପାଠୀ, ଏସ୍.ଆଇ.ଇ.ଟି.ର ନିର୍ଦ୍ଦେଶକ ଶ୍ରୀ ବ୍ରହ୍ମାନନ୍ଦ ପାତ୍ର, ଶ୍ରୀ ନିତ୍ୟାନନ୍ଦ ନାଥ ଓ ଶ୍ରୀ ନିତ୍ୟାନନ୍ଦ ...ପ୍ରମୁଖ ଭାଷଣ ଦେଇ ନାରୀ ଶିକ୍ଷାର ଅଗ୍ରଗତି ଉପରେ ...ଆଲୋକପାତ କରିଥିଲେ ।

...ମୁଖ୍ୟଅତିଥି ଭାବରେ ଯୋଗଦେଇ ପଞ୍ଚାୟତରାଜ ମନ୍ତ୍ରୀ ...ଶ୍ରୀ ଦାମୋଦର ରାଉତ କହିଥିଲେ ଯେ ରାଜ୍ୟରେ ମହିଳା ...ଶିକ୍ଷାର ଅଗ୍ରଗତି ନିମନ୍ତେ ପ୍ରତ୍ୟେକ ମହିଳା ମହାବିଦ୍ୟାଳୟକୁ ...ଲକ୍ଷ ଟଙ୍କା ଓ ଉଚ୍ଚ ବିଦ୍ୟାଳୟକୁ ୫୦ ହଜାର ଟଙ୍କା ଅନୁଦାନ ...ଦିଆଯାଉଛି । ନାରୀ ଶିକ୍ଷାର ବିକାଶ ଉପରେ ସେ ଗୁରୁତ୍ୱ ...ଦେଇଥିଲେ ।

## ଓଡ଼ିଆ ନାଟ୍ୟ ଜଗତକୁ ଜଗନ୍ନାଥ ପାଣିଙ୍କ ଅବଦାନ ଚିର ସ୍ମରଣୀୟ

ଓଡ଼ିଆ ନାଟ୍ୟ ଜଗତକୁ ଆଦି ଗୀତିନାଟ୍ୟକାର ଜଗନ୍ନାଥ ପାଣିଙ୍କ ଅବଦାନ ଚିରସ୍ମରଣୀୟ ହୋଇ ରହିଥିବ । ସ୍ୱର୍ଗୀୟ କବିଙ୍କ ୧୫୬ତମ ଜନ୍ମବାର୍ଷିକୀ ଉପଲକ୍ଷେ ସ୍ଥାନୀୟ ରବୀନ୍ଦ୍ର ମଣ୍ଡପଠାରେ ଅନୁଷ୍ଠିତ ଜୟନ୍ତୀ ସମାରୋହ ଉତ୍ସବରେ ଅଭିଭାଷଣ ପ୍ରଦାନ କରି ବିଶିଷ୍ଟ ସାହିତ୍ୟିକମାନେ ଉପରୋକ୍ତ ମତପୋଷଣ କରିଛନ୍ତି ।

ଜଗନ୍ନାଥ ପାଣି ସ୍ମୃତି ସଂସଦ ପକ୍ଷରୁ ଆୟୋଜିତ ଦୁଇଦିନ ବ୍ୟାପୀ ଏହି ଜୟନ୍ତୀ ସମାରୋହକୁ ଗତକାଲି ସନ୍ଧ୍ୟାରେ ବାଚସ୍ପତି ଶ୍ରୀ ଯୁଧିଷ୍ଠିର ଦାସ ଆନୁଷ୍ଠାନିକ ଭାବେ ଉଦ୍‌ଘାଟନ କରିଥିଲେ । ସ୍ମୃତି ସଂସଦର ସଭାପତି ଯୁଗଳକିଶୋର ପଟ୍ଟନାୟକ ଅଧ୍ୟକ୍ଷତା କରିଥିଲେ । ଏହି ଉତ୍ସବରେ ସାହିତ୍ୟିକ ସାତକଡ଼ି ହୋତା ସ୍ୱାଗତ ଭାଷଣ ଦେଇଥିଲେ ଏବଂ ଅଧ୍ୟାପକ ବ୍ରହ୍ମାନନ୍ଦ ରାୟ ମୁଖ୍ୟ ବକ୍ତାଭାବେ ଯୋଗ ଦେଇଥିଲେ ।

ମୁଖ୍ୟଅତିଥି ଭାବେ ଉତ୍ସବରେ ଯୋଗଦେଇ ବାଚସ୍ପତି ଶ୍ରୀ ଦାସ କହିଲେ, ଗଣକବି ବୈଷ୍ଣବ ପାଣି ନିଜ ସୃଷ୍ଟି ସମ୍ଭାରରେ ଜଗନ୍ନାଥ ପାଣିଙ୍କୁ 'ଗୁରୁ' ଭାବେ ଗ୍ରହଣ କରି ତାଙ୍କର ଭୂୟସୀ ପ୍ରଶଂସା କରିଥିବା ଦିଗରୁ ସେ ଯଥାର୍ଥରେ ଓଡ଼ିଆଭାଷା ସାହିତ୍ୟର ଆଦି ଗୀତି ନାଟ୍ୟକାର । କିନ୍ତୁ ମାହାଙ୍ଗା ଅଞ୍ଚଳବାସୀଙ୍କ ଉଦ୍ୟମ ଯୋଗୁଁ ବୈଷ୍ଣବ ପାଣି ସମ୍ପୃକ୍ତ ଅଞ୍ଚଳର ଜନଜୀବନକୁ ଛୁଇଁପାରିବା ସଙ୍ଗେ ସଙ୍ଗେ ରାଜ୍ୟ ସ୍ତରରେ ଯେଉଁଳି ପ୍ରତିଷ୍ଠିତ ହୋଇ ପାରିଛନ୍ତି, ଉତ୍ତରକର ଜଗନ୍ନାଥ ପାଣି ଓ କିଶନନଗରର ବାଳକୃଷ୍ଣ ମହାନ୍ତିଙ୍କ କ୍ଷେତ୍ରରେ ତାହା ସମ୍ଭବ ହୋଇ ପାରିନାହିଁ । ତେଣୁ ପ୍ରକୃତ ସାହିତ୍ୟିକ ମୂଲ୍ୟାୟନ ହୋଇପାରି ନଥିବା ପ୍ରତିଭାଧରମାନଙ୍କୁ ଲୋକଲୋଚନକୁ ଆଣିବା ଲାଗି ଗବେଷକମାନେ ପ୍ରଚେଷ୍ଟା କରିବାକୁ ସେ ଆହ୍ୱାନ ଜଣାଇଥିଲେ ।

ମୁଖ୍ୟବକ୍ତା ବ୍ରହ୍ମାନନ୍ଦ ରାୟ ଜଗନ୍ନାଥ ପାଣିଙ୍କ ସୃଷ୍ଟିସମ୍ଭାର ଓଡ଼ିଆ ସାହିତ୍ୟ ଜଗତକୁ 'ଅମୂଲ୍ୟ ରତ୍ନଭଣ୍ଡାର' ବୋଲି ବର୍ଣ୍ଣନା କରି ବିଭିନ୍ନ ଦୃଷ୍ଟିକୋଣରୁ ତା'ର ବୈଶିଷ୍ଟ୍ୟ ପ୍ରତିପାଦନ କରିଥିଲେ । ଛାନ୍ଦ ସାହିତ୍ୟକୁ ନାଟ୍ୟାଭିମୁଖୀ କରି ଓଡ଼ିଆ ଭାଷା ସାହିତ୍ୟରେ ନବଦିଗନ୍ତ ସୃଷ୍ଟି କରିଥିବା ଯୋଗୁ ସେ ଯଥାର୍ଥରେ କାବ୍ୟ ନାଟ୍ୟକାର ବୋଲି ବର୍ଣ୍ଣନା କରି ଜଗନ୍ନାଥ ପାଣିଙ୍କ ଉପରେ ସାରଳା ଦାସ, ଉପେନ୍ଦ୍ର ଭଞ୍ଜ ଓ ବିଶି ଖୁଣ୍ଟିଆ ପ୍ରଭୃତିଙ୍କ ପ୍ରଭାବ ପଡ଼ିଥିଲା ବୋଲି ସେ ଦର୍ଶାଇଥିଲେ ।

ସ୍ୱାଗତ ଭାଷଣରେ ସାତକଡ଼ି ହୋତା ଓଡ଼ିଆ ଭାଷା ଓ ସଂସ୍କୃତିକୁ ବଞ୍ଚାଇ ରଖିବାକୁ ହେଲେ ଜଗନ୍ନାଥ ପାଣିଙ୍କ ଭଳି ଲୁକାୟିତ ପ୍ରତିଭାଧରମାନଙ୍କ ସ୍ମୃତି ଉପଜୀବ୍ୟ ରଖିବା ଲାଗି ଉଦ୍ୟମ ହେବା ଆବଶ୍ୟକ ବୋଲି ମତପୋଷଣ କରିଥିଲେ । ସ୍ମୃତି ସଂସଦର ସମ୍ପାଦକ ଡଃ ଉପେନ୍ଦ୍ର ନାୟକ ବିବରଣୀ ପାଠ କରି ୧୯୮୬ ମସିହାରୁ ନିରବଚ୍ଛିନ୍ନଭାବେ ଏହି ଅନୁଷ୍ଠାନ ପକ୍ଷରୁ ଜୟନ୍ତୀ ଓ ଶ୍ରାଦ୍ଧୋତ୍ସବ ପାଳନ କରାଯାଉଛି ବୋଲି କହିଥିଲେ । ଏହି ଉତ୍ସବରେ ବାଚସ୍ପତି ଶ୍ରୀ ଦାସ ସ୍ମରଣିକା "ଜଗନ୍ନାଥ ପାଣି ପରିକ୍ରମା" (୨ୟ ଖଣ୍ଡ) ଉନ୍ମୋଚନ କରିବା ସଙ୍ଗେ ସଙ୍ଗେ ବିଶିଷ୍ଟ କଳାକାର ଅକ୍ଷୟ ମହାନ୍ତି (କୋଣ୍ୟପାଳ)ଙ୍କୁ ଅନୁଷ୍ଠାନ ପକ୍ଷରୁ ସମ୍ମାନିତ କରିଥିଲେ ।

# କୁଷ୍ଠ ରୋଗର ମୂଳୋତ୍ପାଟନ

ଡାକ୍ତର ଦେବଦତ୍ତ ମିଶ୍ର

ୟୁରୋପ ମହାଦେଶରେ ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀରେ କୁଷ୍ଠରୋଗର ପାଦୁର୍ଭାବ କହିଲେ ନସରେ । ହେଲେ ଉନ୍ନତ ସ୍ୱାସ୍ଥ୍ୟରକ୍ଷା, ସ୍ୱାସ୍ଥ୍ୟ ଶିକ୍ଷାର ପ୍ରସାର ଜନସଂଖ୍ୟାବୃଦ୍ଧିର ନିୟନ୍ତ୍ରଣ, ରୋଗର ଆଦ୍ୟ ଚିହ୍ନଟିକରଣ ଫଳରେ ସେ ଦିଗନ୍ତରୁ ରୋଗର ମୂଳୋତ୍ପାଟନ ସମ୍ଭବ ହୋଇଗଲା । ହେଲେ ଆମ ଦେଶରେ ରାଜ ପଥରେ କୁଷ୍ଠ ଭିକ୍ଷୁକମାନଙ୍କୁ ଦେଖିଲେ କିଏ କହିବ ଯେ ଏ ଦେଶରୁ ଏ ବେମାର ମୂଳୋତ୍ପାଟନ ହୋଇଯିବ । କୁଷ୍ଠରୋଗୀ ଯେପରି ବିକଳାଙ୍ଗ ହେଉଛନ୍ତି ତାହା ବାସ୍ତବରେ ଜନମାନସରେ ଆତଙ୍କ ଓ ଶିହରଣ ସୃଷ୍ଟି କରୁଛି । କୁଷ୍ଠରୋଗ ଏକ ଜୀବାଣୁ କୃତ ରୋଗ, ଏହା ବଂଶଗତ ତଥା ଅଭିଶପ୍ତ ନୁହେଁ । ଆଦ୍ୟ ଚିହ୍ନଟିକରଣ ଓ ସର୍ବାଧୁନିକ ବହୁବିଧ ଔଷଧ ପ୍ରୟୋଗ ଚିକିତ୍ସା ଦ୍ୱାରା (MULTI DRUG THERAPY) କୁଷ୍ଠରୋଗର ସମ୍ପୂର୍ଣ୍ଣ ଜୀବାଣୁ ବିହୀନ ହେବା ଇତ୍ୟାଦି ସ୍ୱାସ୍ଥ୍ୟ ଶିକ୍ଷାର ବାର୍ତ୍ତା ବିଭିନ୍ନ ଗଣମାଧ୍ୟମ ଜରିଆରେ ବହୁଳ ଭାବେ ପ୍ରସାରିତ ହେଉଅଛି । ଏ ଦେଶରେ ଜନମାନସରେ ଅନ୍ଧ ବିଶ୍ୱାସ, କୁସଂସ୍କାର, କିମ୍ବଦନ୍ତୀ ଏଭଳି ଭାବେ ପର୍ଯ୍ୟବସିତ ଯେ କୁଷ୍ଠରୋଗକୁ ଘୃଣା ନକରି କୁଷ୍ଠରୋଗୀକୁ ଘୃଣା କରିବା ଏକ ଜାତୀୟ ବର୍ଣ୍ଣିତ ଓ ଶିକ୍ଷିତ ମହଲରେ ଏହି ଘୃଣା ଓଲଟା ଅତି କୁଷ୍ଠରୋଗୀକୁ ଘୃଣା କରିବା ଓ ଆଉ ଗୋଟିଏ ସମସ୍ୟା ଯଥା ଯୌତୁକ ରାକ୍ଷାସ ଏ ଦୁଇଟା ସାମ୍ପ୍ରତିକ ଜାତୀୟ ଚରିତ୍ରର ପରିପ୍ରକାଶ । ସମସ୍ତେ କଥାରେ ଆଦର୍ଶବାଦୀ ହେଲେ ମଧ୍ୟ ଆଚରଣ ଶିବ ହେଉନାହାନ୍ତି । କୁଷ୍ଠରୋଗାକ୍ରାନ୍ତ ବ୍ୟକ୍ତି ସମାଜ ଓ ପରିବାରରୁ ଚ୍ୟୁତ ହେବାପରେ କ୍ଷୁଧା ତୃଷା ମେଣ୍ଟାଇବା ପାଇଁ ଭିକ୍ଷାବୃତ୍ତିର ଆଶ୍ରୟ ନିଏ । ଆଧାସବାଦୀ ସଭ୍ୟ ପୁରୁଷ ଯୌନ ତୃଷା ମେଣ୍ଟାଇବା ପାଇଁ ମହିଳା ତଥା ଯୁବତୀ ରୋଗିଣୀକୁ ମଧ୍ୟ ବାଦ୍ ଦିଏ ନାହିଁ । ପୁଅଝିଅଙ୍କୁ ମଣିଷକରି ଅଥବା ଜନ୍ମ ଦେଇଦେଲେ ସୁଦ୍ଧା ରୋଗାକ୍ରାନ୍ତ ତଥା ଅବସର ପ୍ରାପ୍ତ ବୃଦ୍ଧ ପିତାମାତାଙ୍କୁ ଆଣି କୌଣସି ଡାକ୍ତରଖାନା ଓ୍ୱାର୍ଡ଼ ବା ଆଶ୍ରମରେ ଛାଡ଼ିଦେଲାପରେ ଆଉ ଦେଖା ମଧ୍ୟ କରନ୍ତି ନାହିଁ । ରୋଗାକ୍ରାନ୍ତ ମହିଳାକୁ ସ୍ୱାମୀ ତା'ର ନ୍ୟାଯ୍ୟପ୍ରାପ୍ୟରୁ ବଞ୍ଚିତ କରି ଦାଣ୍ଡକୁ ଠେଲି ଦ୍ୱିତୀୟ ବିବାହ କରୁଛି । ମୋର ୨୦ ଶଯ୍ୟା ବିଶିଷ୍ଟ କୁ... ଓ୍ୱାର୍ଡ଼ରେ ମୋର ଅର୍ଥାତ୍ ମୁଁ ଓ୍ୱାର୍ଡ଼ର ଡାକ୍ତର ମଣଛିନ୍ନୀ ମୁ... ମହିଳା ଚିକିତ୍ସା ପାଇଁ ଆସି ରହିଲା । ମୋତେ ସଦା ସର୍ବଦା କ... କହିଲା ମୋର ସ୍ୱାମୀ ମୋତେ ଭରଣ ପୋଷଣ, ଘର ବି... ସବୁଥିରୁ ବଞ୍ଚିତ କଲା । ମୁଁ ଗ୍ରାମର ଶେଷରେ ନିଛାଟିଆ ଛ... ପଲାକରି ରହିଲି । ପୁରୀ ଜିଲ୍ଲାପାଳଙ୍କର ପ୍ରକୋଷ୍ଠରେ ସେ ... ଜରିଆରେ ଅଭିଯୋଗ ପେସ୍ କଲା ତା'ର ସ୍ୱାମୀକୁ ... ହେଲା । ଗୋଟେ ରାଜିନାମା କରି ଜଣେ ଓକିଲଙ୍କ ... ଚୁକ୍ତି ହୋଇଗଲା ଓ ଶେଷରେ ତାକୁ ଘରକୁ ନେବେ... କହିଲା । ହେଲେ ନେଇ ଏପରି ତିରସ୍କାର କଲା ଯେ ସେ ... ନରହି ଛାଟିପିଟି ହୋଇ ପୁଣି ଓ୍ୱାର୍ଡ଼ରେ ରହିଲା ଓ ପ୍ରତ୍ୟୁଷ ... ରାଜନ୍ ନାମ୍ନୀ ଜଣେ ଘରଛଡ଼ା ରୋଗୀ ତାକୁ ଆଦରିଲା ଓ ... ରେଳ ଲାଇନ୍ କଡ଼ ବାଲି ଉପରେ ଗୋଟିଏ ଶିଶୁ ... ଅଛି । ଜଣେ କନ୍ୟାପିତା ତାଙ୍କର ଅବିବାହିତା କନ୍ୟା ... ରୋଗଗ୍ରସ୍ତା କନ୍ୟାକୁ ଆଣି ଓ୍ୱାର୍ଡ଼ରେ ରଖିଲେ । ... କୁଷ୍ଠରୋଗ ଡାକ୍ତର ମଧ୍ୟସ୍ଥତା କଲେ କାରଣ ସେ ... ମହାଦେବ ମନ୍ଦିର ପାଖେ ପଲାକରି ଅଧୁଆ ପଡ଼ିଲା । ... ଦିନ ବିତିଗଲା । ୧ ବର୍ଷ ଅତିବାହିତ ହେବା ପରେ ଡାକ୍ତର ... ନଥିବା ବେଳେ କନ୍ୟାପିତା ଆଣି ଡାକ୍ତର ଘରେ ... ଅଜାଡ଼ିଲା । ହେଲେ ଶେଷରେ କହିଲା ଗ୍ରାମରେ ତାକୁ ... ଦେବେ ନାହିଁ । ତେବେ ତାକୁ ଗୋଟିଏ କୁଟୀର ଶିଳ୍ପ ... ରଖିଦିଆଗଲା । ବିକଳାଙ୍ଗ କୁଷ୍ଠରୋଗୀ ଆସି ... ପଡ଼ିଲେ । ହଜୁର ଘା' ଶୁଖୁନାହିଁ ଟିକେ ରଖନ୍ତୁ । ... ପରେ ଏକେତ ଯିବାକୁ ଛାଡ଼ି ହେବନାହିଁ । ତେବେ ଯଦି ... ଡାକ୍ତରଖାନାରୁ ଛାଡ଼ିଲାବେଳେ ତାଙ୍କ ଏରିଆର L.C.U ... (କୁଷ୍ଠରୋଗ ନିରାକରଣ କେନ୍ଦ୍ର)ର ଆଶ୍ରୟ ନେଲେ ଚିକିତ୍ସିତ ... ଓ ଯାଞ୍ଚ ହେବା କଥା କୁହାଯାଏ, କେତେମାସ ପରେ ପୁଣି ... ଡାକ୍ତର ଖାନାରେ ମୁଣ୍ଡ ଟେକାଇ କିଛିଦିନ ଆଶ୍ରୟ ନେବାକୁ ... ହେଲେ କେତେଦିନ ଏପରି ଚାଲିଥିବା ତାକୁ ସମସ୍ତେ ଘୃଣା ... ଓ ତା'ର ଭଲମନ୍ଦ କେହି ପଚାରୁନାହାନ୍ତି । ସେ ଯେତେବେଳେ ... ସମାଜ ଓ ପରିବାରରୁ ଚ୍ୟୁତ ହୋଇଛି ସେ ଗୋଟିଏ ...

... ପାଇବା ହାସ୍ୟାସ୍ପଦ । କାରଣ ବିଭିନ୍ନ ସ୍ଥାନରେ ବୁଲି ... ଥିଲା ତା'ର କାମ । ଜଣେ ବୃଦ୍ଧ ଏବେ ୱାର୍ଡରେ ... । ସେ ମରିଯିବେ ଓ ତାଙ୍କର ପୁଅମାନେ ମୋ ପାଙ୍ଗେ ... ଠିକ୍ ଉପଯୁକ୍ତ ଔଷଧ ଆଣନ୍ତୁ ଏକଥା ଶୁଣି ପୁଅମାନେ ... ଭୁଲିଲେ ବାପ ଦେହରେ ବିସ୍ମୃତି ହୋଇଗଲେ । ... ଦେଖା ନାହିଁ । ମରିଗଲା ଦିନ ଡାକ୍ତରଖାନାର ... ପୁଅମାନଙ୍କୁ ୧୦୦ ଟଙ୍କା ଦେଇ ଶବଟି ଜିମା କରିଦେଲେ । ... ହୋଇଥିଲେ ହୁଏତ ଗୋଟିଏ ପୁସ୍ତିକା ହୋଇଯିବ । ... ରୋଗୀଙ୍କ ପ୍ରତି କିଭଳି ଭାବେ ଘୃଣା ତାହା ... ନୁହେଁ ବହୁ କୁଷ୍ଠରୋଗର ଡାକ୍ତରଙ୍କ ଅଭିଜ୍ଞତାରୁ ... ସେ କୁଷ୍ଠରୋଗୀଙ୍କୁ ଘୃଣା କରିବାଟା ବୋଧ ହୁଏ ... ପରିପ୍ରକାଶ । ପ୍ରଭୁ ଚୈତନ୍ୟ ଯେତେବେଳେ ... ସ୍ନାନକରି ଶିଷ୍ୟମାନଙ୍କ ଗହଣରେ ମଠକୁ ଫେରନ୍ତି ... ବହୁ କୁଷ୍ଠରୋଗୀଙ୍କୁ ନିବିଡ଼ଭାବେ ଆଲିଙ୍ଗନ ... । କ୍ଷମାପ୍ରାର୍ଥନା କରି ଜଣେ ଶିଷ୍ୟ ତାଙ୍କୁ ...-ଗୁରୁଦେବ ! ଆପଣଙ୍କ ସଦ୍ୟସ୍ନାତ ଶରୀରରେ ... ପୂତ ଗନ୍ଧ ଲାଗୁଛି ଓ ଆପଣ ସେଇ ଦେହରେ ପୂଜା ... ହେଉଛି । ତେବେ ସେଇ ଶିଷ୍ୟର ମନରୁ ବିକାର ଭାବ ... ଆଲିଙ୍ଗନ କରିବାକୁ ଚାହନ୍ତେ ଗୀତାରେ ବର୍ଣ୍ଣିତ ...-ଦର୍ଶନର ରୂପ ସେ ଦେଖିବାକୁ ପାଇଲେ ।

...ନର ଅଗ୍ରଗତି ନଭଶ୍ଚୁମ୍ବୀ । ହେଲେ ଭାରତବର୍ଷରେ ଜାତି, ..., ବୟସ, ଶିକ୍ଷା ସବୁ କିଛି ନିର୍ବିଶେଷରେ କୁଷ୍ଠରୋଗୀ ଏକ ... ଶବ । ଶବ ଉପରେ ହୁଏତ କିଏ ପୁଷ୍ପମାଲ୍ୟ ଦେଇ ତା' ... କରି ଯାଉଛି । ହେଲେ ରାଜପଥରେ ଏ ବିକଳାଙ୍ଗ କୁଷ୍ଠ ...କୁ ଦେଖିଲେ ସ୍ୱତଃସ୍ଫୁର୍ତ୍ତ ଭାବରେ ଗୋଟେ ଦଶ ପଇସି ... ଦେଲେ ଏ ମହାନ୍ ନାଗରିକର କର୍ତ୍ତବ୍ୟ ସରିଗଲା । ... ଘୃଣା ଭାବ ବ୍ୟତୀତ ମୂଳୋତ୍ପାଟନର ଆଉ ଏକ ପ୍ରଧାନ ... ହେଲା ଯେ ବିଜ୍ଞାନାଗାରରେ ବର୍ତ୍ତମାନ ଯଦିଓ ... ସୃଷ୍ଟିର କଳ୍ପନା କରାଯାଉଛି ସେ ସ୍ଥଳେ କୁଷ୍ଠ ...ଗୁଡ଼ିକୁ ମନୁଷ୍ୟ ଶରୀର ବାହାରେ କୌଣସି ମାଧ୍ୟମରେ ...ପାରୁ ନାହିଁ । ତେଣୁ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ...ବାୟୋଟିକ୍ ତଥା ଟୀକାର ଆବିଷ୍କାର ହୋଇପାରୁ ନାହିଁ । ... ହେଉଛି କୁଷ୍ଠରୋଗୀମାନଙ୍କୁ ରାଜପଥରେ ଯେଉଁଳି ... ଲୋକମାନେ ହସ୍ତପଦ ହୀନ ବିକଳାଙ୍ଗ ତଥା କରାଳ ... ଦେଖୁଛନ୍ତି, ସେମାନେ ଜାଣନ୍ତି କୁଷ୍ଠରୋଗର ଲକ୍ଷଣ ବା ... ବୋଧହୁଏ ଏହିପରି । ରୋଗୀ କାହିଁକି ବିକଳାଙ୍ଗ ... ଯଦି ସେମାନେ ଉପଯୁକ୍ତ ସ୍ୱାସ୍ଥ୍ୟ ଶିକ୍ଷା ପ୍ରସାର ଦ୍ୱାରା ଜାଣି ... ତାହାହେଲେ ସମସ୍ୟା ହୁଏତ ଲାଘବ ହୋଇପାରନ୍ତା । ...ଗର ଜୀବାଣୁଗୁଡ଼ିକ ମନୁଷ୍ୟ ଶରୀରରେ ସ୍ନାୟୁ ତନ୍ତୁଗୁଡ଼ିକ ... ନଷ୍ଟ କରନ୍ତି । ଏହାର ନିର୍ଦ୍ଦିଷ୍ଟ କାରଣ ଉପରେ ଗବେଷଣା ... । ତେବେ ଏହା ଏକ ବାସ୍ତବ ତଥ୍ୟ । ଯଦିଓ ରୋଗୀ ... ଓ ପରିବାରରୁ ଚ୍ୟୁତ ହେବା ଭୟରେ ରୋଗକୁ ଲୁଚାଏ ଓ ... ପାଏ ନାହିଁ ତେବେ କାଳକ୍ରମେ ବଡ଼ ସ୍ନାୟୁଗୁଡ଼ିକ ନଷ୍ଟ ...ଯାଆନ୍ତି । ସ୍ନାୟୁଗୁଡ଼ିକ ଠିକ୍ ଇଲେକ୍ଟ୍ରିକ୍ କରେଣ୍ଟ ଯେପରି ... ମଧ୍ୟରେ ପ୍ରବାହିତ ହୁଏ ସେଇପରି ମନୁଷ୍ୟ ଶରୀରର ବିଭିନ୍ନ ...ଭୂତିବାହୀ ତାର ବା ରଜ୍ଜୁ । ଜଣେ ଲୋକ ଗୋଟେ ମାରିଲେ ... ପଡ଼ିଯାଉଛି । ହାଡ଼ର ସ୍ପର୍ଶର ଅନୁଭୂତି ଉର୍ଦ୍ଧ୍ୱଗାମୀ ସ୍ନାୟୁ ... ଯାଇ ବିଭିନ୍ନ ଛିଲେ କେନ୍ଦ୍ର ଅତିକ୍ରମ କରି ମସ୍ତିଷ୍କରେ ପହଞ୍ଚେ ଓ ଶେଷରେ ମସ୍ତିଷ୍କରୁ ନିର୍ଦ୍ଦେଶ ଆସେ । ଘୁଞ୍ଚିଯାଉଥିବା ହାତ୍ ଉଠାଅ । କୁଷ୍ଠରୋଗୀର ସ୍ନାୟୁଗୁଡ଼ିକ ନଷ୍ଟ ହୋଇଗଲେ ଦେହରେ ସ୍ପର୍ଶ ଏପରିକି ଘୁନିଆଁ କାଚପରି ପଦାର୍ଥର ସ୍ପର୍ଶ, ଗରମ ଭାତହାଣ୍ଡିର ଗରମ ସ୍ପର୍ଶ, ବରଫର ଥଣ୍ଡାଳିଆ ସ୍ପର୍ଶ ଏସବୁ ଅନୁଭୂତିକୁ ସ୍ନାୟୁ ବହନ କରୁଥିବାରୁ ବାରିହୁଏ ନାହିଁ । ଫଳରେ ଗୋଡ଼ ତଳିପା ହେଉ ବା ହାତ୍ ଆଙ୍ଗୁଠିରେ କ୍ଷତ ସୃଷ୍ଟି ହୁଏ । ଏହି କ୍ଷତ ମଧ୍ୟ ପାନି ଡ୍ରେସିଂ କରିବାକୁ ଉଦ୍ୟତ ହୁଏ ନାହିଁ । ସିଗାରେଟ ବା ବିଡ଼ି ପିଉଛି । ଶେଷକୁ ହାତ ଆଙ୍ଗୁଠି ବା ଓଠରେ ନିଆଁର ସ୍ପର୍ଶ ଏତେ ଭଲ ଭାବରେ ବାରି ହେଉନାହିଁ, ପୋଡ଼ି ଯାଉଛି । ଏହିପରି କ୍ଷୟ ହୋଇ ହୋଇ ହାଡ଼ଗୁଡ଼ିକରେ ପହଞ୍ଚେ । ତେଣୁ ଆସ୍ତେ ଆସ୍ତେ ପଚିଯାଇ ହାଡ଼ ଗୁପ୍ତ ହୋଇ ସଦି ବାହାରେ । ଚକ୍ଷୁରେ ମଧ୍ୟ ସ୍ପର୍ଶ ଅନୁଭୂତି ନଥିବାରୁ ଚକ୍ଷୁ ଆଘାତପ୍ରାପ୍ତ ହୋଇ ଚକ୍ଷୁଡ଼ୋଳା ନଷ୍ଟ ହୁଏ । ସ୍ନାୟୁ ନଷ୍ଟ ହେବା ଦ୍ୱାରା ମାଂସପେଶୀ କାମ କରେନାହିଁ ଓ ମାଂସପେଶୀଗୁଡ଼ିକ ବଢ଼ନ୍ତି ନାହିଁ । ତେଣୁ ଏଗୁଡ଼ିକ ଶୁଖି ଶୁଖି ଯାଏ । ହାତ, ଗୋଡ଼, ପଞ୍ଝା, ଚଢ଼େଇ ପଞ୍ଝା ପରି ବଙ୍କା ହୋଇଯାଏ । ଥରେ ପଙ୍ଗୁ ହୋଇ ଗଲେ ସ୍ନାୟୁକୁ ଆଉ ପୁନର୍ଜୀବିତ କରି ହୁଏ ନାହିଁ କି ଶରୀରର ଯେଉଁ ଅଙ୍ଗ କ୍ଷୟପ୍ରାପ୍ତ ହୋଇଛି ତାକୁ ସଜାଡ଼ି ହୁଏ ନାହିଁ । କେବଳ କେତେକ ସୀମିତ ବିକୃତି ଅସ୍ତ୍ରୋପଚାର ଦ୍ୱାରା ସଜାଡ଼ି ହୁଏ । ଏଇ ଜୀବାଣୁ ଶୀର୍ଣ୍ଣ କଟା କୁଷ୍ଠଭିକ୍ଷୁକ ସାଧାରଣ ଲୋକଙ୍କୁ ଭୟଙ୍କର ଦେଖାଯାନ୍ତି ଓ ସେମାନଙ୍କୁ ଘୃଣ୍ୟ ପଶୁ ରୂପେ ବିବେଚନା କରାଯାଏ । ତେବେ ଏହି ବିକଳାଙ୍ଗ ଭିକ୍ଷୁକ ସମାଜକୁ ଏତେ ସଂକ୍ରମିତ କରନ୍ତି ନାହିଁ । ଯେଉଁମାନେ ଲୁଗା ଜାମା ପୋଷାକ ପିନ୍ଧି ବୁଲୁଥାନ୍ତି ସେମାନଙ୍କ ମଧ୍ୟରୁ ବହୁ ବ୍ୟକ୍ତି କୁଷ୍ଠ ରୋଗାକ୍ରାନ୍ତ ଓ ସବୁ ମୁହୂର୍ତ୍ତରେ ବିହନ ବୁଣି ଗ୍ଲୁଲିଥାନ୍ତି । ଯଦି ରୋଗର ଆଦ୍ୟ ଚିହ୍ନଟୀକରଣ ହେଉଥାନ୍ତା ଦୁଆର ଦୁଆର ବୁଲି ପ୍ରତ୍ୟେକ ନାଗରିକଙ୍କର ସ୍ୱାସ୍ଥ୍ୟ ପରୀକ୍ଷା କରାଯାନ୍ତା ତେବେ ରୋଗର ମୂଳୋତ୍ପାଟନ ହୋଇପାରନ୍ତା । ସର୍ବଶେଷ ଗବେଷଣା ଅନୁଯାୟୀ ବିଶ୍ୱ ସ୍ୱାସ୍ଥ୍ୟ ସଂସ୍ଥାର ନିର୍ଦ୍ଦେଶରେ ଜାତୀୟ କୁଷ୍ଠ ନିୟନ୍ତ୍ରଣ ଯୋଜନା ମାଧ୍ୟମରେ ସ୍ୱଳ୍ପକାଳୀନ ବହୁବିଧ ଚିକିତ୍ସା ପଦ୍ଧତି (MULTI DRUG THEROM ବା MDT) ଦ୍ୱାରା ରୋଗୀ ଜୀବାଣୁ ମୁକ୍ତ ହୋଇ ପାରୁଛି ଓ ରୋଗ ଅଚିରେ ମୂଳୋତ୍ପାଟନ ହୋଇ ପାରିବ ବୋଲି ସାରା ବିଶ୍ୱ ତଥା ଭାରତବର୍ଷର ବୈଜ୍ଞାନିକଗଣ ଦସ୍ତୋକ୍ତି ପ୍ରଦାନ କରୁଛନ୍ତି । ରିଫାମ୍ପିସିନ୍ RIFAMPICIN), କ୍ଲୋଫାଜିମିନ୍ (CLOFAZIMINE) ଓ ଡାପ୍‌ସୋନ୍ (DAPSONE) ପ୍ରଭୃତି ଔଷଧକୁ ଏକ ସଙ୍ଗେ ସେବନ କଲେ ଗୋଟିଏ ଔଷଧକୁ ଉପେକ୍ଷା କରି ବଢୁଥିବା ଜୀବାଣୁ ଆଉ ଗୋଟିଏ ଔଷଧ ଦ୍ୱାରା ନିହତ ହେବେ । ଓଲ୍‌ଫୋକ୍ସାସିନ୍ OLFLOXACIN) ପରି ଆହୁରି ମହୋଷଧିର ଆବିର୍ଭାବ ହେଲାଣି । ଏହି ଔଷଧ ମାଗଣାରେ କୁଷ୍ଠ ନିୟନ୍ତ୍ରଣ କେନ୍ଦ୍ରରେ ତଥା କୁଷ୍ଠ ୱାର୍ଡ଼ରେ ମିଳେ । ହେଲେ ଜନସାଧାରଣଙ୍କର ଘୃଣାଭାବ, ଉପଯୁକ୍ତ ସର୍ଭେ ଓ ରୋଗର ଚିହ୍ନଟିକରଣର ବ୍ୟବସ୍ଥାର ଅଭାବ, ସ୍ୱାସ୍ଥ୍ୟ ଶିକ୍ଷାର ପ୍ରସାର ଅଭାବ ଇତ୍ୟାଦି ଅଭାବରୁ ରୋଗ ମୂଳୋତ୍ପାଟନ ହୋଇ ପାରୁନାହିଁ । ତେଣୁ ଔଷଧର ଆବିର୍ଭାବ ବିଜ୍ଞାନର ଅଗ୍ରଗତି ସତ୍ତ୍ୱେ ମୂଳୋତ୍ପାଟନ ଏକ ବ୍ୟଙ୍ଗାତ୍ମକ ସଙ୍କା ନୁହେଁ କି ?

---

ଡାକ୍ତର ଦେବଦତ୍ତ ମିଶ୍ର,
ଯକ୍ଷ୍ମା-ସଂକ୍ରାମକ ରୋଗ ହାସପାତାଳ (କୁଷ୍ଠ ବିଭାଗ), ପୁରୀ-୨ ।

# ଜଳସେଚନ ପ୍ରକଳ୍ପ ନିର୍ମାଣରେ ବିଳମ୍ବ ଓ ସେଥିର ପ୍ରତିକାର

ଇଃ ରାହାସବିହାରୀ ମହାନ୍ତି

ଆମ ଦେଶରେ ସ୍ୱାଧୀନୋତ୍ତର ସମୟରେ ଯୋଜନାବଦ୍ଧ ଉନ୍ନୟନର ଆବିର୍ଭାବ ଘଟିବା ସହ ବହୁ ସଂଖ୍ୟାରେ ନଦୀ ଉପତ୍ୟକା ପ୍ରକଳ୍ପଗୁଡ଼ିକର ନିର୍ମାଣ କାର୍ଯ୍ୟ ହାତକୁ ନିଆଗଲା । ଉଦ୍ଦେଶ୍ୟ–ବନ୍ୟା ନିୟନ୍ତ୍ରଣ, ଜଳସେଚନ, ବିଦ୍ୟୁତଶକ୍ତି ଉତ୍ପାଦନ ଓ ଜଳଯୋଗାଣ ଇତ୍ୟାଦିର ସୁବିଧା ଯୋଗାଇଦେବା । ପ୍ରଥମ ପଞ୍ଚବାର୍ଷିକ ଯୋଜନାକାଳ ମଧ୍ୟରେ ହୀରାକୁଦ, ଭାକ୍ରାନଙ୍ଗଲ, ଦାମୋଦର ଉପତ୍ୟକା ନିଗମ ଅନ୍ତର୍ଗତ ପ୍ରକଳ୍ପ ସମୂହ, ରିହାଣ୍ଡ, ଗାନ୍ଧୀସାଗର, କୋଏନା ଓ ମାଛକୁଣ୍ଡ ପ୍ରଭୃତି ଆଦ୍ଭୁତି ଅନେକ ପ୍ରକଳ୍ପଗୁଡ଼ିକର ନିର୍ମାଣ କାର୍ଯ୍ୟ ଆରମ୍ଭ କରା ହେଲା । ମାର୍ଚ୍ଚ ୯୦ରେ ୭ମ ପଞ୍ଚବାର୍ଷିକ ଯୋଜନା ଶେଷ ହେଲା । ପ୍ରଥମ ପାଞ୍ଚବାର୍ଷିକ ଯୋଜନାର ଆରମ୍ଭରୁ ମାର୍ଚ୍ଚ ୯୦ରେ ଶେଷ ହୋଇଥିବା ୭ମ ଯୋଜନା କାଳ ମଧ୍ୟରେ ଅନେକ ପ୍ରକଳ୍ପର ନିର୍ମାଣ କାର୍ଯ୍ୟ ଶୁରୁ କରାହେଲା । ବହୁ ସମସ୍ୟା ଓ ନାନା କାରଣରୁ କାର୍ଯ୍ୟର ଅଗ୍ରଗତି ବାଧାପ୍ରାପ୍ତ ହେବା ଯୋଗୁଁ ଦୁର୍ଭାଗ୍ୟବଶତଃ ଅଧିକାଂଶ ନଦୀ – ଉପତ୍ୟକା ପ୍ରକଳ୍ପ ସମ୍ପୂର୍ଣ୍ଣ ହେବାରେ ବହୁ ସମୟ ଅତିବାହିତ ହେବାକୁ ଲାଗିଲା । ନିର୍ଦ୍ଧାରିତ ସମୟସୀମା ଭିତରେ ପ୍ରକଳ୍ପଗୁଡ଼ିକ ସମ୍ପୂର୍ଣ୍ଣ ନହେବା କାରଣରୁ କେବଳ ଯେ ମୂଳ ଅଟକଳ ବଢ଼ିବାରେ ଲାଗିଲା ତାହା ନୁହେଁ ତହିଁରୁ ମିଳିବାକୁ ଥିବା ଉପକାର ଯାହାକି ବହୁ ଆଗରୁ ପ୍ରାପ୍ୟ ହୋଇପାରି ଥାନ୍ତା ସେଥିରେ ମଧ୍ୟ ବିଳମ୍ବ ଘଟିଲା । ବିଳମ୍ବ ହେବାର ଯେ କୌଣସି କାରଣ ଥାଉନା କାହିଁକି ରାଜନୈତିକ ନେତା, ପ୍ରଶାସକ, ଅର୍ଥନୀତିବିତ୍, ସାମ୍ବାଦିକ, ବୁଦ୍ଧିଜୀବୀ ଏବଂ ଅନ୍ୟାନ୍ୟ ଅନେକ ଏହି ପ୍ରସଙ୍ଗରେ ବିଭିନ୍ନ ସମୟରେ ସଙ୍ଗଠିତ ହେଉଥିବା ଆଲୋଚନା ମାନଙ୍କରେ ମୁଖ୍ୟତଃ ଯନ୍ତ୍ରୀମାନଙ୍କ ମୁଣ୍ଡରେ ସମ୍ପୂର୍ଣ୍ଣ ଦୋଷ ଢାଳି ଦେଇଥାନ୍ତି । ପ୍ରକଳ୍ପଗୁଡ଼ିକ ସମ୍ପୂର୍ଣ୍ଣ ହେବାରେ ହେଉଥିବା ବିଳମ୍ବର କାରଣ ଓ ଉତ୍ପତ୍ତି ବିଷୟରେ ପୁଙ୍ଖାନୁପୁଙ୍ଖ ଅନୁସନ୍ଧାନ ନକରି ସାଧାରଣତଃ ଏପରି ମନ୍ତବ୍ୟ ଦିଆଯାଇଥାଏ । କେତୋଟି ବିଶେଷ ପ୍ରକଳ୍ପକୁ ବାଦ ଦେଲେ ଏ ଜନିତ ପରିସ୍ଥିତିର ମୋଟାମୋଟି ରୂପରେଖରେ କୌଣସି ଉଲ୍ଲେଖନୀୟ ପରିବର୍ତ୍ତନ ଦୃଷ୍ଟିଗୋଚର ଏ ପର୍ଯ୍ୟନ୍ତ ହୋଇ ନାହିଁ କହିଲେ ଭୁଲ ହେବ ନାହିଁ ।

ସାତ ଗୋଟି ଯୋଜନାକାଳ ମଧ୍ୟରେ ରାଜ୍ୟରେ ମାଛକୁଣ୍ଡ (ମିଳିତ ଯୋଜନା), ହୀରାକୁଦ, ସାଲନ୍ଦୀ, ମହାନଦୀ ଡ଼ୀକୋଣଭୂମି ସେଚ ଯୋଜନା (ପର୍ଯ୍ୟାୟ–୨), ବାଲିମେଳା (ମିଳିତ ଯୋଜନା), ରେଙ୍ଗାଲି, ଉପର କୋଲାବ, ମହାନଦୀ ବ୍ୟାରେଜ୍, ଯୋଜନା ସେଚ ଯୋଜନା ଏବଂ ଉପରଇନ୍ଦ୍ରାବତୀ ବୃହତ ପ୍ରକଳ୍ପଗୁଡ଼ିକ ନିର୍ମାଣ କରାହେଲା । ହୀରାକୁଦ ପ୍ରକଳ୍ପଛଡ଼ା ରାଜ୍ୟର ଅନ୍ୟାନ୍ୟ ବୃହତ ପ୍ରକଳ୍ପଗୁଡ଼ିକ ବହୁ କାରଣରୁ ସମ୍ପୂର୍ଣ୍ଣ ହେବାରେ ଅତ୍ୟଧିକ ବିଳମ୍ବ ଘଟିଛି । ଏହା ଯେ କେବଳ ଆମ ରାଜ୍ୟରେ ଘଟୁଛି ତାହା ନୁହେଁ ଅନ୍ୟାନ୍ୟ ରାଜ୍ୟର ଅଧିକାଂଶ ପ୍ରକଳ୍ପଗୁଡ଼ିକ ମଧ୍ୟ ସମ୍ପୂର୍ଣ୍ଣ ହେବାରେ ବିଳମ୍ବ ହେଉଛି । ଏଥିରୁ ଦେଖାଯିବ ଯେ ଅଧିକାଂଶ କ୍ଷେତ୍ରରେ ଇଞ୍ଜିନିୟରମାନଙ୍କର କ୍ଷମତା ବହିର୍ଭୂତ କେତେ ବାଧତାମୂଳକ କାରଣ ଯୋଗୁଁ ଏପରି ବିଳମ୍ବ ଘଟିଥାଏ । ଏହି ପ୍ରବନ୍ଧଟିରେ ଉଭୟ ବୈଷୟିକ ଓ ସାଧାରଣ ସମସ୍ୟାଗୁଡ଼ିକ, ଯାହାକି ଏପରି ବିଳମ୍ବର କାରଣ ହୋଇଥାଏ । ତାହା ଉପରେ ଆଲୋକପାତ କରିବାକୁ କିଛିଟା ଉଦ୍ୟମ ହୋଇଛି । ସବୁ ସ୍ତରରେ ଏଭଳି ସମସ୍ୟା ଉପରେ ଯଦି ସତର୍କ ଦୃଷ୍ଟି ରଖାଯାଏ ତାହା ହେଲେ ନିର୍ଦ୍ଧାରିତ ସମୟସୀମା ଭିତରେ ପ୍ରକଳ୍ପଗୁଡ଼ିକ ସମ୍ପୂର୍ଣ୍ଣ ହେବା ସାଙ୍ଗକୁ ଯୋଜନାର ଅଟକଳ ମଧ୍ୟ କମିବ ଓ ପ୍ରକଳ୍ପଗୁଡ଼ିକରୁ ଉପକାର ମଧ୍ୟ ନିର୍ଦ୍ଧାରିତ ସମୟରେ ମିଳିପାରିବ ।

କେନ୍ଦ୍ରୀୟ ଜଳ ଆୟୋଗର ବୈଷୟିକ ଯାଞ୍ଚ ପାଇଁ ପ୍ରକଳ୍ପ ଲେଖା ସ୍ତରରେ ଏକ ଉଚ୍ଚାଭିଳାଷୀ ନିର୍ମାଣ ନିର୍ଘଣ୍ଟ ପ୍ରସ୍ତୁତ ... ନିର୍ଘଣ୍ଟର ସାଧାରଣତଃ ଅବଧାରଣ କରାଯାଇ ଥାଏ । ଏପରି ନିର୍ମାଣ ନିର୍ଘଣ୍ଟ ସପକ୍ଷରେ ଅଧିକାଂଶ ସମୟରେ ... ଦର୍ଶାଯାଇଥାଏ କି ପ୍ରକଳ୍ପ ମିତବ୍ୟୟ ଗତ ଉପଯୋଗିତା ... କରିବାରେ ବିଫଳ ହେବ । ଯଦି ଲମ୍ବା ନିର୍ମାଣ ନିର୍ଘଣ୍ଟ ... କରାଯାଏ ଏବଂ ତତ୍‌ସହ ଯୋଜନା କମିଶନର ଅନୁମୋଦନ ... କରିବା ମଧ୍ୟ ସହଜସାଧ୍ୟ ହୋଇ ନପାରେ । ସେ ହେତୁ ପ୍ରକଳ୍ପ ... ନିମନ୍ତେ ଯୋଜନା କମିଶନ୍‌ର ଅନୁମୋଦନ ହାସଲ କରିବା ପାଇଁ ରାଜ୍ୟ ସରକାରମାନେ ବ୍ୟଗ୍ର ଥାଆନ୍ତି । ପ୍ରକଳ୍ପ ଲେଖା ...

ନିର୍ମାଣ ନିର୍ଘଣ୍ଟର ବ୍ୟାବହାରିକ ଦିଗଟି ପ୍ରତି ଗମ୍ଭୀର ଚିନ୍ତା ପ୍ରଦାନ କରାଯିବା ସମ୍ଭବ ହୋଇ ନଥାଏ । ନିର୍ମାଣ ନିର୍ଘଣ୍ଟରେ ଏକ ସମ୍ପୂର୍ଣ୍ଣ ଅବଧାରଣା କରିବା ସହ ପ୍ରକଳ୍ପ ପାଇଁ ଦରକାର ପଡୁଥିବା କ୍ଷେତ୍ରଗତ ଉନ୍ନୟନ ଓ ପ୍ରସ୍ତୁତି ଏବଂ କାର୍ଯ୍ୟ ସମ୍ପାଦନର କ୍ଷମତା ପ୍ରାପ୍ତ ସଂସ୍ଥାଗୁଡ଼ିକର ପ୍ରସ୍ତୁତି କରଣ ପାଇଁ ବହୁତ କମ୍ ସମୟସୀମା ଧାର୍ଯ୍ୟ କରାଯାଇଥାଏ । କିନ୍ତୁ ବାସ୍ତବରେ ପ୍ରକଳ୍ପ ପାଇଁ ଆବଶ୍ୟକୀୟ କ୍ଷେତ୍ରଗତ ଉନ୍ନୟନ ଓ ପ୍ରସ୍ତୁତି ପାଇଁ ନିମ୍ନ-ପ୍ରଦତ୍ତ କେତୋଟି ପ୍ରଧାନ କାରଣ ଯୋଗୁଁ ବହୁ ଅଧିକା ସମୟର ଆବଶ୍ୟକ ହୋଇଥାଏ ।

(୧) ଯେତେ ଦରକାର ତହିଁରୁ ଯଥେଷ୍ଟ କମ୍, ପ୍ରକଳ୍ପ-ଦାୟିତ୍ୱ କର୍ମଚାରୀଙ୍କ ନିମନ୍ତେ ସରକାରୀ ଅନୁମୋଦନ ପ୍ରାପ୍ତ ହେବା ଓ ସେମାନଙ୍କର ଯୋଜନାର ଦୁର୍ଗମ ଅଞ୍ଚଳକୁ ଯିବା ପାଇଁ ଅନିଚ୍ଛା ପ୍ରଦର୍ଶନ କରିବା ।

(୨) ଭୂ-ଅର୍ଜନ ଓ ଜଙ୍ଗଲ ସଫେଇ ଇତ୍ୟାଦି ସମସ୍ୟା ଯୋଗୁଁ ଯୋଜନା କ୍ଷେତ୍ରକୁ ପ୍ରବେଶ-ଦ୍ୱାର ଓ ଘର-ଦ୍ୱାର ଇତ୍ୟାଦି ନିର୍ମାଣ କାର୍ଯ୍ୟରେ ଡେରି ହେବ ।

(୩) ପ୍ରକଳ୍ପ ନିର୍ମାଣର ପ୍ରାରମ୍ଭରେ ଦୁର୍ଗମ ଅଞ୍ଚଳରେ ଯୋଜନା ପାଇଁ ଦରକାର ପଡୁଥିବା କ୍ଷେତ୍ରଗତ ଉନ୍ନୟନ ଓ ପ୍ରସ୍ତୁତି ନିମନ୍ତେ କାର୍ଯ୍ୟ ସମ୍ପାଦନର ଉତ୍ତମ କ୍ଷମତା ପ୍ରାପ୍ତ ସଂସ୍ଥାମାନଙ୍କର ଅଭାବ ।

(୪) ବହୁ ସଂସ୍ଥା ଜଡ଼ିତ ହେଉଥିବା ଯୋଗୁଁ ବାରୁଦଘର, ତେଲ ଡିପୋ, ରେଲୱେ ସାଇଡ଼ିଂ ପ୍ରଭୃତିର ନିର୍ମାଣରେ ବିଳମ୍ବ ।

ଯୋଜନା କାର୍ଯ୍ୟର ଅଗ୍ରଗତିକରି ପ୍ରତିବନ୍ଧକ ସୃଷ୍ଟିକରି ଅଯଥା ବିଳମ୍ବ ଘଟାଉଥିବା କାରଣଗୁଡ଼ିକ ଏଡ଼େଇଦେବା ସହଜସାଧ୍ୟ ନୁହେଁ, ପ୍ରଥମରୁହିଁ ନିର୍ମାଣ ନିର୍ଘଣ୍ଟ କଲାବେଳେ ଯଥେଷ୍ଟ ସମୟ ସୀମା ବରାଦ କରିବା ଆବଶ୍ୟକ । ଏହିପରି ଆଦ୍ୟ-ନିର୍ମାଣ-ନିର୍ଘଣ୍ଟରେ, ପରିକଳ୍ପନା, ନିର୍ମାଣ ପାଇଁ ଆବଶ୍ୟକ ପଡୁଥିବା ନକ୍ସା, ମୂଲ୍ୟ ଅବଧାରଣ, ଟେଣ୍ଡର- ଦଲିଲ ପ୍ରସ୍ତୁତି ଓ କାର୍ଯ୍ୟସନ୍ନିକରଣ ଇତ୍ୟାଦି ପାଇଁ ଆବଶ୍ୟକୀୟ ସମୟ ସୀମାର ବାସ୍ତବ ବରାଦ ହେବା ଦରକାର । ଏହି ସବୁ କାରଣ ଯୋଗୁଁ ପ୍ରଧାନ ନିର୍ମାଣ କାର୍ଯ୍ୟ ବାସ୍ତବ ରୂପରେ ଆରମ୍ଭ ହେଲା ବେଳକୁ ଦୁଇ-ତିନି ବର୍ଷ ବିଳମ୍ବ ଘଟି ଯାଇଥାଏ । ଏ ଜନିତ ଉପର କୋଲାବ ଯୋଜନାର କେତୋଟି ତଥ୍ୟ (ପ୍ରଦତ୍ତ ସରଣୀ ନଂ ୧) ଦୃଷ୍ଟାନ୍ତ ସ୍ୱରୂପ ପ୍ରକାଶ କରାହେଲା । ଅନ୍ୟାନ୍ୟ ଯୋଜନାରେ ମଧ୍ୟ ଏଭଳି ବିଳମ୍ବ ପ୍ରାରମ୍ଭିକ ସ୍ତରରେ ଘଟିଥାଏ । ଆଦର୍ଶ-କାର୍ଯ୍ୟକ୍ରମଗତ ବାତାବରଣକୁ ଆଖିରେ ରଖି, ନିର୍ମାଣ ନିର୍ଘଣ୍ଟ ସବୁବେଳେ ପ୍ରସ୍ତୁତ କରାଯାଇ ଥାଏ ଯାହାକି ବାସ୍ତବ କ୍ଷେତ୍ରରେ କେବେହେଲେ ହାସଲ ହୁଏ ନାହିଁ । ନିର୍ମାଣ ସମୟରେ ବହୁ ସୀମାବଦ୍ଧ ଅବସ୍ଥା ଯୋଗୁଁ ଠିକାଦାରମାନେ ଧାର୍ଯ୍ୟ ଅଗ୍ରଗତି ହାସଲ କରିବାରେ ପ୍ରାୟତଃ ବିଫଳ ହୁଅନ୍ତି । ପ୍ରଧାନ ଷ୍ଟ୍ରକଚରଗୁଡ଼ିକର ଭିତ୍ତିଖନନ କାର୍ଯ୍ୟ ପାଇଁ ମଧ୍ୟ ବହୁ ସମୟ ଅତିବାହିତ ହୋଇଥାଏ, ଏବଂ ଏତଦ୍ୱାରା ସୁପର ଷ୍ଟ୍ରକ୍‌ଚର ନିର୍ମାଣରେ ବହୁ ବିଳମ୍ବ ଘଟେ । ପରିକଳ୍ପନା ସ୍ତରରେ ଯେପରି ପ୍ରକାରର ନିର୍ମାଣ-ପ୍ରଣାଳୀ, ଧାରଣା କରାଯାଇ ଥିଲେ ମଧ୍ୟ, ବାସ୍ତବ କ୍ଷେତ୍ରରେ ନିର୍ମାଣ ପ୍ରକ୍ରିୟା ଅଧିକ ଶ୍ରମ-ଭିତ୍ତିକ କରାଯାଇଥାଏ । ଏହାର ଉଦ୍ଦେଶ୍ୟ ଦେଶର ବିରାଟ ଅଣକୌଶଳୀ ଶ୍ରମିକମାନଙ୍କ ପାଇଁ ନିଯୁକ୍ତିର ସୁଯୋଗ ସୃଷ୍ଟି କରିବ । ନିର୍ମାଣ ନିର୍ଘଣ୍ଟର ପ୍ରସ୍ତୁତି ସମୟରେ ଏପରି ଏକ ଗୁରୁତ୍ୱପୂର୍ଣ୍ଣ ଚିନ୍ତାଧାରାର ଅବଧାରଣ କରାଯିବା ପ୍ରାୟ ପରିଲକ୍ଷିତ ହୁଏ ନାହିଁ । ଉପର କୋଲାବ ଯୋଜନାର ପ୍ରାରମ୍ଭିକ ସ୍ତରରେ ଚିନ୍ତା କରାଯାଇଥିବା ଓ ବାସ୍ତବ କ୍ଷେତ୍ରରେ ହାସଲ ହୋଇଥିବା ନିର୍ମାଣ ନିର୍ଘଣ୍ଟର ଏକ ତୁଳନାତ୍ମକ ଉଦାହରଣ (ପ୍ରଦତ୍ତ ସରଣୀ ନଂ୧, ୨) ଏଥିରେ ରଖାଗଲା

## ଉପର କୋଲାବ ଯୋଜନା

### ଶରଣୀ ନଂ ୧

| କ୍ରମିକ ସଂଖ୍ୟା | ପ୍ରଧାନ ଘଟଣାବଳୀ | ପ୍ରକଳ୍ପ-ଲେଖାରେ ଧାର୍ଯ୍ୟ କରାଯାଇଥିବା କାର୍ଯ୍ୟାରମ୍ଭର ସମୟ ନିର୍ଘଣ୍ଟ | ବାସ୍ତବ କ୍ଷେତ୍ରରେ କାର୍ଯ୍ୟାରମ୍ଭର ସମୟ |
|---|---|---|---|
| ୧ | ନଦୀ ପ୍ରବାହର ଗତି ପରିବର୍ତ୍ତନ ପାଇଁ ଆବଶ୍ୟକୀୟ ବ୍ୟବସ୍ଥା ସମୂହ | ୧୯୭୬-୭୭—ଦ୍ୱିତୀୟ ବର୍ଷ | ଜାନୁଆରୀ ୧୯୭୮<br>୮ବର୍ଷ ୮ ମାସ |
| ୨ | ପ୍ରଧାନ ବନ୍ଧ-ଭିତ୍ତି ଖନନ | ୧୯୭୬-୭୭—ଦ୍ୱିତୀୟ ବର୍ଷ | ଜାନୁଆରୀ ୧୯୭୭—ପାର୍ଶ୍ୱାଂଶ<br>ଜାନୁଆରୀ ୧୯୭୮—ନଦୀ ଅଞ୍ଚଳ |
| ୩ | ସୁଡ଼ଙ୍ଗ କାର୍ଯ୍ୟ | ୧୯୭୬-୭୭—ଦ୍ୱିତୀୟ ବର୍ଷ | ଜୁଲାଇ ୧୯୭୯ |
| ୪ | ପେନ୍‌ଷ୍ଟକ୍‌ସ | ୧୯୭୭-୭୮—ତୃତୀୟ ବର୍ଷ | ଗ୍ରାଉଟିଂ—ଡିସେମ୍ବର ୧୯୮୧<br>କଂକ୍ରିଟିଂ—ମେ ୧୯୮୩ |
| ୫ | ବିଜୁଳି ଘରର ଭିତ୍ତି ଖନନ | ୧୯୭୬-୭୭—ଦ୍ୱିତୀୟ ବର୍ଷ | ଫେବୃଆରୀ ୧୯୭୮ |
| ୬ | ଟେଲ୍‌ରେସ୍ | ୧୯୭୬-୭୭—ଦ୍ୱିତୀୟ ବର୍ଷ | ଏପ୍ରିଲ୍ ୧୯୮୧ |

# ଉପର କୋଲାବ ଯୋଜନା

## ଶରଣୀ ନଂ ୨

## ପ୍ରଧାନ କାର୍ଯ୍ୟସମୂହର କାର୍ଯ୍ୟ ନିର୍ଘଣ୍ଟ ଓ ବାସ୍ତବ କାର୍ଯ୍ୟରେ ସମୟ ପରିସର

| କ୍ରମିକ ନମ୍ବର | ପ୍ରଧାନ ବିଷୟଗୁଡିକ | ପ୍ରାରମ୍ଭିକ କର୍ମ–ତାଲିକାଭୁକ୍ତ ନିର୍ମାଣ ନିର୍ଘଣ୍ଟ | ବାସ୍ତବ ନିର୍ମାଣର ସମୟ ପରିସର |
|---|---|---|---|
| ୧. | ପ୍ରଧାନ ବନ୍ଧ–<br>(ଖନନ, ପଥର ଯୋଡେଇ ଏବଂ କଂକ୍ରିଟିଂ) | ୫ଟି ସିଜନ୍‌ସ | ଜାନୁଆରୀ ୧୯୭୭–ସେପ୍ଟେମ୍ବର ୧୯ |
| ୨. | ପ୍ରଧାନ ସୁଡଙ୍ଗ–<br>(ଖନନ ଏବଂ କଂକ୍ରିଟିଂ) | ୫ଟି ସିଜନ୍‌ସ | ଜୁଲାଇ ୧୯୭୯–ଅକ୍ଟୋବର ୧୯<br>୮ ବର୍ଷ ୩ ମାସ |
| ୩ | ପେନ୍‌ଷ୍ଟକ୍‌ସ | ୪ଟି ସିଜନ୍‌ସ | ଡିସେମ୍ବର ୧୯୮୧–ଡିସେମ୍ବର ୧୯<br>୬ ବର୍ଷ |
| ୪. | ବିଜୁଳି ଘର<br>(ଖନନ ଏବଂ କଂକ୍ରିଟିଂ) | ୫ଟି ସିଜନ୍‌ସ | ଫେବ୍ରୁଆରୀ ୧୯୭୮–ମାର୍ଚ୍ଚ ୧୯<br>(ପ୍ରଥମ ଓ ଦ୍ୱିତୀୟ ୟୁନିଟ୍) |
| ୫. | ଟେଲ୍‌ରେସ୍<br>(ଖନନ ଏବଂ କଂକ୍ରିଟିଂ) | ୪ଟି ସିଜନ୍‌ସ | ଏପ୍ରିଲ୍ ୧୯୮୧–ଅକ୍ଟୋବର ୧୯<br>୬ ବର୍ଷ ୬ ମାସ |
| ୬. | ଜଳଭଣ୍ଡାର ସୃଷ୍ଟି | ଜୁନ୍ ୧୯୮୨ | ଅଗଷ୍ଟ ୧୯୮୬ |
| ୭. | ବିଜୁଳି ଘର–<br>କାର୍ଯ୍ୟକ୍ଷମ ଓ ପୂର୍ଣ୍ଣନ<br>ୟୁନିଟ୍–୧<br>ୟୁନିଟ୍–୨ | ସେପ୍ଟେମ୍ବର–ଅକ୍ଟୋବର ୧୯୮୨–<br>ମାର୍ଚ୍ଚ–୧୯୮୩ | ମାର୍ଚ୍ଚ ୧୯୮୮ |

କୌଣସି ସମସ୍ୟା ନ ଥାଇ ଯୋଜନାର ଚିନ୍ତାକରିବା କଷ୍ଟକର । ପ୍ରତ୍ୟେକ ଯୋଜନାର ନିଜ ନିଜର ସ୍ୱାତନ୍ତ୍ରତା ଥାଏ ଓ କାର୍ଯ୍ୟର ଅଗ୍ରଗତିରେ ବାଧାପ୍ରାପ୍ତ ହେବା ମଧ୍ୟ ଅଲଗା ଅଲଗା ଧରଣର । ବିଳମ୍ବର ଗୋଟିଏ ପ୍ରଧାନ କାରଣ ହେଲା କାର୍ଯ୍ୟ ନିର୍ବାହ ପାଇଁ ଥିବା ସ୍ୱୀକୃତ ପ୍ରାପ୍ତ ସଂସ୍ଥାଗୁଡ଼ିକର ଅପାରଗତା । ଆଇନ ଓ ବିଧିଗତ ନିୟମ ନିଷ୍ଠା ଭିତରେ ଗୋଟିଏ କର୍ତ୍ତବ୍ୟ – ଭ୍ରଷ୍ଟ ଠିକାଦାରର କାର୍ଯ୍ୟ ବନ୍ଦକରି ଅନ୍ୟ ଏକ ଠିକାଦାର ବରାଦ ବହୁ ସମୟ ସାପେକ୍ଷ ଓ କଷ୍ଟକର ମଧ୍ୟ । ମଧ୍ୟବର୍ତ୍ତୀ ସ୍ତରରେ କୌଣସି କାର୍ଯ୍ୟ ବନ୍ଦ କରିବା କାର୍ଯ୍ୟତଃ ଅସମ୍ଭବ ମନେ ହୁଏ, ବିଶେଷକରି ଯେତେବେଳେ କି ଏହା ଯାନ୍ତ୍ରୀକ ନିର୍ମାଣ କୌଶଳ ଦ୍ୱାରା ଛନ୍ଦି ହୋଇ ପଡ଼ିଥାଏ ଏବଂ ଠିକାଦାର ଦ୍ୱାରା ବିଭିନ୍ନ ଯନ୍ତ୍ରପାତିର ସ୍ଥାପନା କରାଯାଇଥାଏ, ଯଦି କାର୍ଯ୍ୟ ବନ୍ଦ କରିବା ଅପରିହାର୍ଯ୍ୟ ହୋଇପଡ଼େ, କାର୍ଯ୍ୟର ଅବଶିଷ୍ଟାଂଶ ସମ୍ପୂର୍ଣ୍ଣ କରିବା ମଧ୍ୟ ବହୁ ସମୟ ସାପେକ୍ଷ ହୋଇ ଉଠେ ; କାରଣ କାର୍ଯ୍ୟ ଆରମ୍ଭ କରିବା ପୂର୍ବରୁ ସାଧାରଣ ନିୟମ ନିଷ୍ଠା ପାଳନ କରିବାକୁ ପଡ଼ିଥାଏ ଯହିଁରେ କି କାର୍ଯ୍ୟ ପାଇଁ ଦରକାର ପଡୁଥିବା ଯନ୍ତ୍ରପାତିର ସଂଗ୍ରହ ଓ ସ୍ଥାପନା ମଧ୍ୟ ଅନ୍ତର୍ଭୁକ୍ତ ଅଟେ । ଦୁର୍ଭାଗ୍ୟବଶତଃ ଅଧିକାଂଶ ପ୍ରଧାନ କାର୍ଯ୍ୟଗୁଡିକର ଅଗ୍ରଗତି ଠିକାଦାରୀ ସଂସ୍ଥାର ଅପାରଗତା ଯୋଗୁଁହିଁ ବହୁ ବାଧାପ୍ରାପ୍ତ ହୋଇଥାଏ ଏବଂ କର୍ମକର୍ତ୍ତାଗଣ ନିଜକୁ ଅସହାୟ ମନେ କରନ୍ତି ; ଠିକ୍ କରିପାରନ୍ତି ନାହିଁ କି ଚୁକ୍ତିନାମାଟିକୁ ବନ୍ଦ କରିଦେବେ କିମ୍ବା ବିଳମ୍ବକୁ ସହିଯିବେ । ଅଧିକାଂଶ କ୍ଷେତ୍ରରେ ମାମଲାଜନିତ କାର୍ଯ୍ୟ ଏଡ଼ିବା ପାଇଁ ବିଳମ୍ବ ହିଁ ସହିନେବାକୁ ପଡ଼ିଥାଏ ।

ଆବଶ୍ୟକୀୟ ପରିମାଣର ସିମେଣ୍ଟ, ଷ୍ଟିଲ, ବାରୁଦ ସାମଗ୍ରୀ ଓ ଯାନ୍ତ୍ରିକ ନିର୍ମାଣ ପାଇଁ ଦରକାର ପଡୁଥିବା ସରଞ୍ଜାମ ଯୋଗାଣରେ ସହଜ ଲଭ୍ୟତାର ଅଭାବ ମଧ୍ୟ ବିଳମ୍ବର କାରଣ ହୋଇପଡ଼େ । ବିଶେଷକରି ବାରୁଦ ସାମଗ୍ରୀ ଓ ଷ୍ଟିଲ୍ ଯୋଗାଣରେ ବହୁ ସମସ୍ୟା ଦେଖାଯାଇଥାଏ । ଏଥି ଯୋଗୁଁ ମଧ୍ୟ ବିଳମ୍ବ ସଂଗଠିତ ହୋଇଥାଏ । ଅତୀତରେ ଯଥେଷ୍ଟ ଅର୍ଥ ଯୋଗାଣ ଅଭାବରୁ ମଧ୍ୟ ଯୋଜନାର ସମ୍ପାଦନରେ ବିଳମ୍ବ ଘଟି ଯୋଜନାର ପ୍ରାରମ୍ଭ କାଳରେ କର୍ମକର୍ତ୍ତାଗଣ ଅର୍ଥ ଯୋଗାଣ ତୁଳନାରେ ଯଥେଷ୍ଟ କମ୍ ଖର୍ଚ୍ଚ କରିଥାନ୍ତି କିନ୍ତୁ ନିର୍ମାଣରେ ଚଞ୍ଚଳତା ପ୍ରକାଶ ପାଇଲା ପରେ ଅଧିକାଂଶ ଯୋଜନା ଅର୍ଥବରାଦ ପ୍ରମାଣରେ ଖର୍ଚ୍ଚ ହୋଇଯାଇଥାଏ । ଶିଖର ବର୍ଷଗୁଡ଼ିକରେ ଅର୍ଥବରାଦ ଜନିତ ଅଭାବ ଚଞ୍ଚଳତା ସମୟରେ ନିର୍ମାଣରେ ଦେଖାଦେଉଥିବା

...ଓ ଏହାଦ୍ୱାରା ବିଳମ୍ବ ଘଟିଥାଏ । ମନରେ ପ୍ରଶ୍ନଟିଏ ...ଯଦି ସରକାର ଯୋଜନାଗୁଡ଼ିକ ପାଇଁ ଯଥେଷ୍ଟ ଅର୍ଥ ...ବ୍ୟବସ୍ଥା କରିଦେଇପାରନ୍ତି ତାହାହେଲେ କ'ଣ ...ଗୁଡ଼ିକର ନିର୍ମାଣ ଧାର୍ଯ୍ୟ ସମୟ ନିର୍ଘଣ୍ଟ ମଧ୍ୟରେ ଏକ ...ଘଟଣା ପରି ଶେଷ ହୋଇ ପାରନ୍ତା । ସାଧାରଣତଃ ...ଯେ, ଯୋଜନାଗୁଡ଼ିକ ଯେପରି ହେଲେ ବି ଅର୍ଥାଭାବ ...ସମସ୍ୟାରେ ଜଡ଼ିତ ହୋଇ ପଡ଼ନ୍ତେ, ଯଦିଓ ସରକାର ...ଗୋଟିଏ – ଦୁଇଟି ସମ୍ମାନଜନକ ଯୋଜନା ପାଇଁ ...କାଳୀନ ସମନ୍ୱୟ ରକ୍ଷାକରି ଯଥେଷ୍ଟ ଅର୍ଥବରାଦର ବ୍ୟବସ୍ଥା ... ଦେଇ ପାରନ୍ତି । ବର୍ତ୍ତମାନ ଏହି ଆଲୋଚନାର ...ପ୍ରେକ୍ଷୀରେ ଯାହା ହେଲେ ବି ଏପରି ଏକ ଚିନ୍ତାଧାରା ...ମନେ ହୁଏ ଯେହେତୁ ବହୁ କାରଣରୁ ବିଳମ୍ବ ସଂଘଟିତ ...ଥାଏ ।

...ମାଣ ପାଇଁ ଦରକାର ପଡୁଥିବା ଯନ୍ତ୍ରପାତି ଓ ତହିଁର ...ଯନ୍ତ୍ରାଂଶ ଏବଂ କୌଶଳୀ କାରିଗରମାନଙ୍କର ସହଜ ...ବହୁ ଅଭାବ ଯୋଗୁଁ ନିର୍ମାଣ କାର୍ଯ୍ୟରେ ବିଳମ୍ବ ଘଟେ । ...ପାଇଁ ଦରକାର ପଡୁଥିବା ଲମ୍ବା ଓ ସମୟ ସାପେକ୍ଷ ...ରୀତି ଯୋଗୁଁ ଯୋଜନା ପାଇଁ ଜମି ମିଳିବାରେ ମଧ୍ୟ ବହୁ ...ମ୍ବ ଘଟେ । ବଡ଼ି ଅଞ୍ଚଳ ବାସିନ୍ଦାଙ୍କ ଥଇଥାନ ବ୍ୟବସ୍ଥା ମଧ୍ୟ ...ୟ ସାପେକ୍ଷ । ସରକାରଙ୍କ ଥଇଥାନ ପ୍ରଣାଳୀରେ ଅସନ୍ତୋଷ ...ଶ କରି ବହୁ ସମୟରେ ଧର୍ମଘଟ ଆଦି ସଙ୍ଗଠିତ ...ଥାଏ । ଯାହାକି ଅନେକଥର ଯୋଜନାର କାର୍ଯ୍ୟକୁ ସମ୍ପୂର୍ଣ୍ଣ ...ରେ ଅଟକେ କରି ଦେବାରେ ସଫଳକାମୀ ହୋଇଥାଏ । ...ର ଜଙ୍ଗଲ ସଂରକ୍ଷଣ ଆଇନ୍ ଲାଗୁ ହେଲା ପରେ ବିଭିନ୍ନ ...ର ଜଙ୍ଗଲ ଜମି ଯୋଜନାକୁ ହସ୍ତାନ୍ତର ହେବା ପାଇଁ ବହୁ ...ୟ ଅତିବାହିତ ହୋଇଥାଏ । ଏପରି କାର୍ଯ୍ୟ ପାଇଁ ବାରମ୍ବାର/ ...ଲୀ ଦଉଡ଼ିବାକୁ ମଧ୍ୟ ପଡ଼ିଥାଏ । ବିଭିନ୍ନ ପ୍ରକାରର ପ୍ରାକୃତିକ ...ଯଥା : ପାହାଡ଼ କିମ୍ବା ମାଟି ଅରଡ଼ା ଧସିବା, ଅସମୟ– ...ବାତ୍ୟା ଇତ୍ୟାଦି ଯୋଗୁଁ ଜୀବନ ଓ ସମ୍ପତ୍ତି କ୍ଷୟ ଘଟିବା ...ସଙ୍ଗେ କାର୍ଯ୍ୟ ସମ୍ପାଦନରେ ମଧ୍ୟ ବହୁ ବିଘ୍ନ ସୃଷ୍ଟି ...ଥାଏ । ବୃହତ୍ ତଥା ମଧ୍ୟମ ଯୋଜନାମାନଙ୍କରେ ଯେତେ ...ସାବଧାନତା ଅବଲମ୍ବନ କରାଗଲେ ମଧ୍ୟ ଦୁର୍ଘଟଣା ଅପରିତ୍ୟାଜ୍ୟ ...ରହିଲେ ଚାଲିବ । ଶ୍ରମ ଓ ପର୍ଯ୍ୟାବରଣ ସମସ୍ୟା ଧର୍ମଘଟ,/ ...ବନ୍ଦ, ଚକବନ୍ଦ, କଲମବନ୍ଦ ଇତ୍ୟାଦି ନାନା ପ୍ରକାରର ବନ୍ଦ ...ରେ ମଝିରେ ସମ୍ପାଦିତ ହେବା ଦ୍ୱାରା କାର୍ଯ୍ୟରେ ବାଧା ସୃଷ୍ଟି ...ଥାଏ । ଏ ଜନିତ ସମସ୍ୟାବଳୀ କାର୍ଯ୍ୟରେ ବିଳମ୍ବ ...ଥାଏ ।

ପ୍ରକଳ୍ପ ପାଇଁ ଦରକାର ପଡୁଥିବା ସର୍ବେକ୍ଷଣ, ବିଭିନ୍ନ ଅନୁସନ୍ଧାନ, ...ପ୍ରବାହ ଓ ବାୟୁ ମଣ୍ଡଳ ଜନିତ ତଥ୍ୟାଦି ସଂଗ୍ରହରେ ଆମର ...ଳିତ ସଂସ୍ଥାରେ ଖାମଖିଆଲ ଓ ଉଦାସୀ ମନୋଭାବ ...ଲକ୍ଷିତ ହୋଇଥାଏ । ନିର୍ଭରଯୋଗ୍ୟ ଓ ଗୁଣାତ୍ମକ ତଥ୍ୟାଦି ...ଉପରେ ଗୁରୁତ୍ୱ ନ ଦେବା ପ୍ରଚଳିତ ସଂସ୍ଥାଗତ ପରିଚାଳନାର ଏକ ବିରାଟ ଦୁର୍ବଳତା କହିଲେ ଚଳେ । ଏସବୁ ସର୍ବେକ୍ଷଣ ଓ ତଥ୍ୟାଦି ସଂଗ୍ରହ ପାଇଁ ବହୁତ କମ୍ ସମୟ ଓ ଯୋଜନାର ଅଟକଳ ତୁଳନାରେ ବହୁ କମ୍ ପରିମାଣର ଅର୍ଥର ବରାଦ ମଧ୍ୟ ହୋଇଥାଏ । ପ୍ରକଳ୍ପ–ଲେଖାଟି କିପରି ଓ କେତେ ଶୀଘ୍ର ଯୋଜନା କମିଶନଙ୍କର ଅନୁମୋଦନ ଲାଭ କରିବ ସେଥିପାଇଁ ଉକ୍ତ କର୍ତ୍ତୃପକ୍ଷବୃନ୍ଦ ବହୁ ଚିନ୍ତିତ ଥାଆନ୍ତି । ଏ ସବୁର ଗୁଣାତ୍ମକ ଦିଗ ପ୍ରତି ଆଦୌ କେହି ବିଶେଷ ଚିନ୍ତିତ ହେବାର ଦେଖାଯାଏ ନାହିଁ । ସର୍ବେକ୍ଷଣ, ଅନୁସନ୍ଧାନ ଓ ନିର୍ଭରଯୋଗ୍ୟ ତଥ୍ୟାଦି ସଂଗ୍ରହରେ ଉଦାସ ଓ ଖାମଖିଆଲୀ ମନୋଭାବ ଯୋଗୁଁ ନିର୍ମାଣ ଜନିତ ପରିକଳ୍ପନାର ରୂପରେଖ ନିର୍ମାଣ–ପୂର୍ବ ପରିକଳ୍ପନାଠାରୁ ଅନେକାଂଶରେ ଭିନ୍ନ ହୋଇଯାଇଥାଏ । ନିର୍ମାଣ ସମୟରେ ମଧ୍ୟ ଅନେକ ସମୟ ଅତିବାହିତ ହୋଇଥାଏ, ସର୍ବେକ୍ଷଣ ଓ ଅନୁସନ୍ଧାନ ଓ ତଥ୍ୟାଦି ସଂଗ୍ରହରେ ; ଯାହା ଯୋଗୁ ନିର୍ମାଣର ପ୍ରଗତି ବାଧାପ୍ରାପ୍ତ ହୋଇଥାଏ । ଏ ଜନିତ ଏକ ସୁସ୍ପଷ୍ଟ ଉଦାହରଣ ହେଲା ଏବେ ଉପର ଇନ୍ଦ୍ରାବତୀ ଯୋଜନାର ପୋଡ଼ାଗଡ଼ ପଥର ବନ୍ଧର ପରିକଳ୍ପନା ଓ ନକ୍ସା କରଣରେ କରାଯାଇଥିବା ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ । ସେଠାରେ ନିର୍ମାଣ ସମୟରେ ପର୍ଯ୍ୟାପ୍ତ ଭାବରେ କରାଯାଇଥିବା ସର୍ବେକ୍ଷଣ ଓ ଅନୁସନ୍ଧାନରୁ ଜଣାପଡ଼ିଲା ଯେ ପଥର ବନ୍ଧର ସ୍ଥାପନ ପାଇଁ ସବଳ ପଥର ସ୍ତର, ପରିମିତ ଗଭୀରତା ମଧ୍ୟରେ ମିଳୁ ନାହିଁ । ସେହିପରି ଉପର–କୋଲାବର ଆକୌର ବ୍ଲକ୍‌ଗୁଡ଼ିକ ପାଇଲ–ଫାଉଣ୍ଡେସନ୍ ଉପରେ ସ୍ଥାପିତ ହେବାର ପରିକଳ୍ପନା କରାଯାଇଥିଲା, କିନ୍ତୁ ପରବର୍ତ୍ତୀ ସମୟରେ ହୋଇଥିବା ପର୍ଯ୍ୟାପ୍ତ ସର୍ବେକ୍ଷଣରୁ ଜଣା ପଡ଼ିଲା ଯେ ସବଳ ପଥର ସ୍ତର ପରିମିତ ଗଭୀରତା ମଧ୍ୟରେ ମିଳୁ ନାହିଁ । ପରିକଳ୍ପନା ଓ ନକ୍ସାକରଣରେ ଆଦ୍ୟ ପ୍ରସ୍ତାବଠାରୁ ଏପରି ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ ଦ୍ୱାରା ପ୍ରକଳ୍ପର ମୂଲ୍ୟାୟନରେ ବିଚ୍ୟୁତି ଘଟିବା ଛଡ଼ା ନିର୍ମାଣ ନିର୍ଘଣ୍ଟରେ ମଧ୍ୟ ବହୁ ବିଳମ୍ବ ଘଟିଥାଏ । ଏ ଜନିତ ସମସ୍ୟାର ସୃଷ୍ଟି ପାଇଁ ଯନ୍ତ୍ରୀମାନେ ହିଁ ବିଶେଷ ମାତ୍ରାରେ ଦାୟୀ ।

ବର୍ତ୍ତମାନ ଯୋଜନା ପରିଚାଳନା ଗତ ସଂସ୍ଥାମାନଙ୍କରେ ମୁଖ୍ୟର| ଅନ୍ୟାନ୍ୟ ଯନ୍ତ୍ରୀମାନଙ୍କର କ୍ଷମତା ଏତେ ସଙ୍କୁଚିତ ଅବସ୍ଥାରେ| ଅଛି ଯେ ଅଧିକାଂଶ ନିଷ୍ପତ୍ତି ପାଇଁ ରାଜଧାନୀର ସଚିବାଳୟକୁ ଚାହିଁ ରହିବାକୁ ପଡ଼ିଥାଏ । ସେହିପରି ଅଧୀକ୍ଷଣ ଯନ୍ତ୍ରୀ, ନିର୍ବାହୀ ଯନ୍ତ୍ରୀ ପ୍ରଭୃତି କୌଣସି ନିଷ୍ପତ୍ତି ପାଇଁ ପ୍ରକଳ୍ପର ମୁଖ୍ୟ ପରିଚାଳକଙ୍କର ନିର୍ଦ୍ଦେଶକୁ| ଅନାଇ ବସିଥାଆନ୍ତି| ସଚିବାଳୟ ଉପରେ ନିର୍ଭରଶୀଳତାରେ ଯଦି ଯଥେଷ୍ଟ ପରିମାଣର ହ୍ରାସ/ ପରିଲକ୍ଷିତ ହୋଇପାରନ୍ତା, ତାହା ହେଲେ ଏ ଜନିତ/ପରିସ୍ଥିତିର ବହୁତ ଉନ୍ନତି ହୋଇପାରନ୍ତା ଏବଂ ତତ୍‌ସହ ନିର୍ମାଣ ନିର୍ଘଣ୍ଟରେ ବିଳମ୍ବର ହ୍ରାସ ମଧ୍ୟ ଉପଲବ୍ଧି କରାଯାଇ ପାରନ୍ତା ।

ପ୍ରକଳ୍ପରେ ନିୟୋଜିତ ମାନବ ସମ୍ବଳର କୁପରିଚାଳନା, ସରକାରୀ କଳରେ ନାସ୍ତି ସୂଚକ ମନୋବୃତ୍ତିର ଅଭିବୃଦ୍ଧି ଅନ୍ୟାନ୍ୟ ସରକାରୀ ସଂସ୍ଥାଗୁଡ଼ିକର ସହଯୋଗ ମନୋବୃତ୍ତିର ଅଭାବ । ଅନ୍ୟାନ୍ୟ କର୍ମଚାରୀ ଓ କୌଶଳୀ କାରିଗର ବିଭିନ୍ନ ଜାଗାରେ କାର୍ଯ୍ୟକ୍ଷମର ପ୍ରବଳତା ଯୋଗୁଁ ମାନଙ୍କର ଦକ୍ଷତାର ଅଭାବ,

ପର୍ଯ୍ୟାପ୍ତ କ୍ଷମେ ଲେଟର ଅଫ୍ କ୍ରେଡିଟ୍‌ର ସଭ୍ୟତାରେ ଅଭାବ ପ୍ରଭୃତି ଯୋଗୁଁ ନିର୍ମାଣ ନିର୍ଘଣ୍ଟରେ ବିଳମ୍ବ ଘଟିଥାଏ ।

ଏ ସବୁ ଆଲୋଚନାର ଉପଯୁକ୍ତ ସମୀକ୍ଷା କରାଯାଇ ସଂଶୋଧକ ପଦକ୍ଷେପମାନ ପରିଚାଳନାଗତ ବ୍ୟବସ୍ଥାରେ ଖଞ୍ଜି ଦିଆଯାଇ ପାରିଲେ ପ୍ରକଳ୍ପର ନିର୍ମାଣ–ନିର୍ଘଣ୍ଟରେ ବିଳମ୍ବରେ ଯଥେଷ୍ଟ ହ୍ରାସ ହୋଇ ପାରନ୍ତା । କେତୋଟି ସଂଶୋଧକ ପଦକ୍ଷେପ ଯଥା : (୧) ପୂର୍ବ କାର୍ଯ୍ୟ ସମ୍ପାଦନଗତ ଦକ୍ଷତା, କାର୍ଯ୍ୟକ୍ଷମ /ଦର ପ୍ରଭୃତିକୁ ଆଖିରେ ରଖି ଠିକାଦାର ବାଛିବା ବାଞ୍ଛନୀୟ । ଦରକାର ପଡ଼ିଲେ ଏଥି ପାଇଁ ଥିବା ବିଧି ବିଧାନର ଯଥାଯଥ ପରିବର୍ତ୍ତନ କରାଯିବା ଉଚିତ ; (୨) ପ୍ରକଳ୍ପ, ଯୋଜନା କମିଶନର ଅନୁମୋଦନ ଲାଭ କରିବାର ଯଥେଷ୍ଟ ପୂର୍ବରୁ, ତହିଁରେ ଦରକାର ପଡୁଥିବା କ୍ଷେତ୍ରଗତ ଉନ୍ନୟନର ପ୍ରସ୍ତୁତି ପ୍ରଭୃତି କାର୍ଯ୍ୟଗୁଡ଼ିକର ଆରମ୍ଭ କରିଦେବା ଉଚିତ । (୩) ରାଜ୍ୟ ସରକାର ସିମେଣ୍ଟ, ଷ୍ଟିଲ୍, ବାରୁଦ ସାମଗ୍ରୀ ପ୍ରଭୃତିର ଯୋଗାଣ ପ୍ରଭୃତିର ଯୋଗାଣ ଉପରେ ଉପଯୁକ୍ତ ନିୟନ୍ତ୍ରଣ ଜାହିର କରିବା ଦରକାର । (୪) କ୍ଷମତାର ବ୍ୟାପକ ବିକେନ୍ଦ୍ରୀକରଣ ଆବଶ୍ୟକ । (୫) ଉନ୍ନତ ଧରଣର ସର୍ବେକ୍ଷଣ ଓ ଅନୁସନ୍ଧାନ ସହ ନିର୍ଭରଶୀଳ ଓ ଗୁଣାତ୍ମକ ତଥ୍ୟାଦିର ସଂଗ୍ରହ ପାଇଁ ଯଥାଯଥ ବ୍ୟବସ୍ଥାମାନ ପ୍ରଚଳିତ ପରିଚାଳନାଗତ ପ୍ରଣାଳୀରେ ଖଞ୍ଜିଦେବା ଆବଶ୍ୟକ । ଏ ସବୁର ଯାଞ୍ଚ ବିଭିନ୍ନ ଶୃଙ୍ଖଳାକୁ ନେଇ ଏକ ବିଶାରଦ ମଣ୍ଡଳୀ ଦ୍ୱାରା ହେବା ଉଚିତ । (୬) ପ୍ରକଳ୍ପରେ କାର୍ଯ୍ୟ କରୁଥିବା ସମସ୍ତ କର୍ମଚାରୀଙ୍କ ପାଇଁ ତହିଁର ଶେଷ ପର୍ଯ୍ୟନ୍ତ ଯଥେଷ୍ଟ ପ୍ରୋତ୍ସାହନର ବ୍ୟବସ୍ଥା ରହିବା ଉଚିତ୍ ; (୭) ସରକାରୀ ସ୍ତରରେ ଭୂ–ଅର୍ଜନ ଓ ଜଙ୍ଗଲ ସଫେଇ ଇତ୍ୟାଦି ପାଇଁ ବରାବର ସତର୍କକାରୀ ଦୃଷ୍ଟି ଦେବା ଆବଶ୍ୟକ । ଉପରୋକ୍ତ ଦୁଇଟି କାର୍ଯ୍ୟର ଯଥାଯଥ ସରଳୀକରଣ କରାଯିବା ଆହୁରି ଉତ୍ତମ ହେବ । (୮) ବଦଳି ନିଯୁକ୍ତି ପ୍ରଭୃତିରେ ରାଜନୈତିକ ପ୍ରଭାବର ହ୍ରାସ ଆବଶ୍ୟକ (୯) ସରକାରଙ୍କ ନିଷ୍ପତ୍ତି ପ୍ରକଳ୍ପର ଅଧିକାରୀଙ୍କୁ ଶୀଘ୍ର ଜଣାଇବା ଆବଶ୍ୟକ (୧୦) ସବୁ ସ୍ତରରେ ସତର୍କତାମୂଳକ ଅନୁଧ୍ୟାନ ବାଞ୍ଛନୀୟ । ବିଭିନ୍ନ ବିଭାଗ ସହ ସଂଯୋଗ ରକ୍ଷା ଦିଗରେ ମଧ୍ୟ ଆବଶ୍ୟକ ପଦକ୍ଷେପ ମାନ ନିଆଯିବା ଉଚିତ (୧୧) ନିର୍ମାଣ ନିର୍ଘଣ୍ଟ ଉଚ୍ଚାଭିଳାଷୀ ନ ହୋଇ ବାସ୍ତବବାଦୀ ହେବା ଆବଶ୍ୟକ । (୧୨) ପ୍ରକଳ୍ପ ପାଇଁ ଆବଶ୍ୟକୀୟ ଅର୍ଥ ବରାବର ସୁନିଶ୍ଚିତ ଓ ଏକ ବାସ୍ତବ ବ୍ୟବସ୍ଥା ବାଞ୍ଛନୀୟ । କ୍ରେଡିଟ୍ ବ୍ୟବସ୍ଥାର ସରଳୀକରଣ ହେବା ଉଚିତ ; ଇତ୍ୟାଦି ପ୍ରତି ନଜର ଦେବା ଏକାନ୍ତ ଆବଶ୍ୟକ ମନେ ହୁଏ । ଏ ସବୁ ବିଷୟରେ ଆଲୋଚନା କଲାବେଳେ ବ୍ରିଟେନର ପ୍ରଖ୍ୟାତ ଶିଳ୍ପପତି ସାର୍ ଯୋନ୍ ହାର୍ଭି ଜୋନସ୍‌ଙ୍କର ପ୍ରାୟ ଦୁଇ ବର୍ଷ ତଳେ ଦିଆଯାଇ ଦେଇଥିବା ଏକ ବକ୍ତବ୍ୟଟି ମନକୁ ସ୍ୱତଃ ଆସେ । ସେ କହିଥିଲା "ପରିବର୍ତ୍ତନ ନିଶ୍ଚିତ ଭାବରେ ଘଟିବ–କିନ୍ତୁ ଅସୁବିଧା ଜାଣୁ ସେପରି ନୁହେଁ ଏହା ଏ ପର୍ଯ୍ୟନ୍ତ ଆସମାନଙ୍କଠାରୁ ବହୁ ଆଗରେ ଅଛି । ଆମେ ଚିନ୍ତାକରୁ ପଞ୍ଚବର୍ଷୀୟ ଯୋଜନା ପର୍ଯ୍ୟନ୍ତ–ତା' ପରେ ପାଞ୍ଚ ବର୍ଷ ପର୍ଯ୍ୟନ୍ତ ଏହା ହେଲା ଆମ ଭାବନାର ରୂପରେଖ । ଆମେ ଏ ବିରାଟ ପରିବର୍ତ୍ତନ ସହ ମିଳି ଭାବରେ ପାଦ ମିଳାଇ ପାରିବୁ ନାହିଁ । ତେବେ ଏ ପରିବର୍ତ୍ତନର ପରିଚାଳନା କରିବୁ କିପରି ? ସଂସ୍ଥାଗୁଡ଼ିକ ଢିଲା ଛାଡି ବିଚ– ଫଳ ପ୍ରଦ ଦିଗରେ ଆଗେଇ ଯିବା ପାଇଁ । ଆମର ସଂସ୍ଥାଗୁଡ଼ିକ ଉପରୁ ଆରମ୍ଭ ତଳ ମୁହଁ ଓ ଏ ଗୁଡ଼ିକ ସୈନିକ ନିୟନ୍ତ୍ରଣର ଭିତ୍ତି ଉପରେ ପ୍ରତିଷ୍ଠିତ । ଉଦ୍ଦେଶ୍ୟ ଲୋକଙ୍କୁ କାମ କରିବାରୁ ରୋକିବା । ମୁଁ କୌଣସି ସ୍ତର ନଥିବା ସିଧା ସଳଖ ପରିଚାଳନା ସଂସ୍ଥା ଉପରେ ଦୃଢ଼ ବିଶ୍ୱାସ କରେ । ସଂସ୍ଥା ମଧ୍ୟରେ ଯାହା ପ୍ରତିଭା ଯେଉଁଠି ଥାଉନା କାହିଁକି ତାହା ଖୋଜି ବାହାର କରିବା ଆମର କର୍ତ୍ତବ୍ୟ । ଲୋକମାନେ ଆଦେଶ ନୁହେଁ ଦୃଷ୍ଟାନ୍ତ ଦ୍ୱାରା ପ୍ରଭାବିତ ହୁଅନ୍ତି ଯାହାକି ତାଙ୍କୁ ପ୍ରଜ୍ୱଳିତ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ମଧ୍ୟରେ ଚମକ ସୃଷ୍ଟି କରି ପାରିବ ।" ବିଂଶ ଶତାବ୍ଦୀର ଶେଷ ଦଶନ୍ଧି ଆରମ୍ଭ ହୋଇ ଗଲାଣି । ଏହି ଶେଷ ଦଶନ୍ଧିରେ ପରିବର୍ତ୍ତନର ଏକ ଝଡ଼ ସାରା ବିଶ୍ୱରେ ବହିବାକୁ ଲାଗିଲାଣି । ଆମକୁ ଏ ପରିବର୍ତ୍ତନର ଝଡ଼କୁ ସମ୍ମୁଖୀନ ହୋଇ ଏକବିଂଶ ଶତାବ୍ଦୀରେ ପାଦ ଦେବାକୁହେଲେ ଆଗେଇ ଯିବାକୁ ପଡ଼ିବ ନଚେତ୍ ନିଜର ନିଜତ୍ୱକୁ ଚିରଦିନ ହରାଇ ବସିବାକୁ ପଡ଼ିବ ; ଏହା ଆଜିର ପ୍ରଶ୍ନ । ଏହିପରି ଛୋଟ ଛୋଟ ସମସ୍ୟାକୁ ନେଇ ଆମେ ଯଦି ବୁଡ଼ି ରହିବା ତାହା ହେଲେ ପରିବର୍ତ୍ତନ ସହ ପାଦମିଳାଇ ଏକବିଂଶ ଶତାବ୍ଦୀରେ ପାଦ ଦେବା ପାଇଁ ଆଗକୁ ମାଡ଼ି ଚାଲିବା କିପରି ? ଏଇ ପ୍ରଶ୍ନଗୁଡ଼ିକର ଜବାବ ଭବିଷ୍ୟତ ହିଁ ଦେବ ।

(ଏ ଲେଖାର ଅନେକାଂଶ ଇ: ଶରତ କୁମାର ମହାନ୍ତିଙ୍କ Delay in completion of major and medium Rever Valley Project Reasons and Remedies O.P.C. 90–Souvenir.)



ଭୁବନେଶ୍ୱରଠାରେ ଓଡ଼ିଶା କାର୍ଯ୍ୟକାରୀ ସାମ୍ବାଦିକ ସଙ୍ଘର ସଦସ୍ୟମାନଙ୍କ ସହିତ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କରଙ୍କ ଆଲୋଚନା । ବିଭାଗୀୟ ନିର୍ଦ୍ଦେଶକ ଶ୍ରୀ କାଳୀ କୁମାର ରଥ ଉପସ୍ଥିତ ଅଛନ୍ତି ।

# ପାଠକଙ୍କ କଲମରୁ

ଶ୍ରୀ ପ୍ରଫୁଲ୍ଲ ମହାନ୍ତି,
...ସାହି, କଟକ–୭୫୩୦୦୮ ।

• ...ନବ ବର୍ଷର ଶୁଭେଚ୍ଛା ନେବେ । 'ପାଠକଙ୍କ କଲମରୁ' ...ସୃଷ୍ଟି କରିଥିବାରୁ ଧନ୍ୟବାଦ ଜଣାଉଛି । ଆପଣ ଜାଣନ୍ତି ଯେ ...ମାନଙ୍କ ସବୁ ପ୍ରକାର ବିକାଶ ନହେଲେ ଆମ ସମାଜର ବିକାଶ ...। ତେଣୁ ଆପଣଙ୍କୁ ଅନୁରୋଧ ଯେ ଆପଣଙ୍କ ଉତ୍କଳ ପ୍ରସଙ୍ଗରେ ନିୟମିତ ଭାବେ କେବଳ ମହିଳାମାନଙ୍କ ବିଭିନ୍ନ ବିଭାଗରେ ...ପାଇଁ ଏକ ବିଭାଗ ରଖନ୍ତୁ । ଏହାଦ୍ୱାରା ମହିଳାମାନଙ୍କ ବିକାଶ ...ଜନସାଧାରଣ ଓ ସରକାରଙ୍କ ମଧ୍ୟରେ ଏକ ଯୋଗସୂତ୍ର ସ୍ଥାପନ ...ପାରିବ । ଆଶା ଆପଣ ମୋ ଅନୁରୋଧ ରଖିବେ ।

• • ଖୁବ୍ ଶୀଘ୍ର ମହିଳା ବିଭାଗ ସୃଷ୍ଟି କରିବାକୁ ଯାଉଛୁ । ...ମାନେ ଏ ସମ୍ପର୍କରେ ...ମାନଙ୍କ ନିର୍ଦ୍ଦିଷ୍ଟ ମତାମତ ଦେଲେ ଆହୁରି ...ହେବ ।

ଶ୍ରୀ ...ପରିଡ଼ା,
ଗ୍ରାମ–ମଣିକୁଣ୍ଡା (ବାଲିକୁଦା),
ପୋଷ୍ଟ–ସାଇଲୋ ବଡ଼ବିଲ,
ଥାନା–ବ୍ରାହ୍ମଣସାଇଲୋ, କଟକ ।

• ...ଆଜିର ମଣିଷମାନଙ୍କ ମାନସିକ ସ୍ତରରେ ଯେଉଁ ସନ୍ତୁଳନ... ...ସୃଷ୍ଟି ହୋଇଛି–ତାହାଦ୍ୱାରା ଆମର ସାମାଜିକ ସ୍ତରରେ ହିଂସା, ...ଦ୍ୱେଷ, ଅହମିକା ସୃଷ୍ଟି ହେବା ସଙ୍ଗେ ସଙ୍ଗେ ଜାତୀୟ ସଂହତିକୁ ...ବ୍ୟାହତ କରୁଛି । ତେଣୁ ଆପଣ ପତ୍ରିକାରେ ରହୁଥିବା ଖାଲି ...ସ୍ଥାନମାନଙ୍କରେ ସେହି ମହାପୁରୁଷଙ୍କର ଛୋଟ ଛୋଟ ବାଣୀ ...ସେମାନଙ୍କର ଆଦର୍ଶ ମହାନ୍ତାଗୁଡ଼ିକୁ ସ୍ଥାନ ଦେଲେ ପାଠକ ତା'ର ମାନସିକ ସ୍ତରରେ ଭାରସାମ୍ୟ ରକ୍ଷା କରିବା ସଙ୍ଗେ ସଙ୍ଗେ ...ପତ୍ରିକାଟି ଉଚ୍ଚକୋଟୀର ହୋଇପାରିବ ।

• • ସବୁ ସଂଖ୍ୟାରେ ନହେଲେ ମଧ୍ୟ କେତେକ ସଂଖ୍ୟାରେ ଏଭଳି ...ବାଣୀ ପ୍ରକାଶ ପାଉଛି ।

ଶ୍ରୀ ପ୍ରଭାକର ପଣ୍ଡା,
ଗ୍ରାମ/ପୋଷ୍ଟ–ଦିଗିରିଆ, ଥାନା–ଆଠଗଡ଼,
ଜିଲ୍ଲା–କଟକ–୭୫୪୦୨୯ ।

• 'ସତ୍ୟ ପଥେ ଧର୍ମ ପଥେ ଘେନିଯାଅ ମୋତେ,
...ପରାଣ ମୋର ତବ ପ୍ରେମ ସ୍ରୋତେ' ।
...ପୁରୁଷଙ୍କର ଏ ମହତ ବାଣୀ କେବେହେଲେ ମିଥ୍ୟା ନୁହେଁ । ଆଜିର ଶିଶୁ କାଲିର ନାଗରିକ । ଆସନ୍ତା କାଲି ତା' ଉପରେ ...ଦେଶ ରକ୍ଷା କରିବାର ଏକ ଗୁରୁ ଦାୟିତ୍ୱ ଯେ ନ୍ୟସ୍ତ ନହେବ, ଏ କଥା କିଏ କହିବ ? ମାତ୍ର ବର୍ତ୍ତମାନର ଯୁବ ଶକ୍ତି ଉପରେ ଉକ୍ତ ...ପାଶ୍ଚାତ୍ୟ ପ୍ରଭାବ ନପଡ଼ିବା ପରି ମନେ ହୁଏ । ଲେଖନୀ ...ମାଧ୍ୟମରେ ଉଦ୍‌ଭ୍ରାନ୍ତ, ପଥଭ୍ରଷ୍ଟଙ୍କୁ ବାଟକୁ ଆଣିବା ଆପଣଙ୍କ ଉଚିତ୍ । ଉତ୍କଳ ପ୍ରସଙ୍ଗର ମନୋରମ ପୃଷ୍ଠାରେ ଆଧୁନିକ ଯୁବକ ପାଇଁ ଯଦି କିଛି ଆଗାମୀ ବାର୍ତ୍ତା ପ୍ରେରିତ ହୁଅନ୍ତା, ତେବେ ଖୁବ୍ ଭଲ ହୁଅନ୍ତା । ଆଶା, ଅନୁରୋଧ ରକ୍ଷା କରିବେ ।

• • ମତାମତ ପାଇଁ ଧନ୍ୟବାଦ । ନିୟମିତ ଭାବେ ଉତ୍କଳ ପ୍ରସଙ୍ଗ ପଢ଼ନ୍ତୁ, ଆପଣ ଯାହା ଚାହିଁଛନ୍ତି ତାହା ଆଗାମୀ ସଂଖ୍ୟାମାନଙ୍କରେ ପାଇବେ ।

ଶ୍ରୀ ବାବାଜୀ ବେହେରା,
ଶ୍ରୀରାମକୃଷ୍ଣ ସେବାଶ୍ରମ, ଟିକାଟାଙ୍ଗ,
ପୋଷ୍ଟ–ଚକାପଦା, ଥାନା–ବେଗୁନିଆ,
ଜିଲ୍ଲା–ପୁରୀ–୭୫୨୦୬୨ ।

• ଆପଣଙ୍କର ଜାନୁଆରୀ '୯୨ ଉତ୍କଳ ପ୍ରସଙ୍ଗ ସଂଖ୍ୟାଟିକୁ ପଢ଼ି ବହୁତ ଖୁସି ହେଲି । ଏଥି ନିମନ୍ତେ ଆପଣଙ୍କୁ ଧନ୍ୟବାଦ ଜଣାଉଛି । ଅନୁରୋଧ, ସ୍ୱାମୀ ବିବେକାନନ୍ଦଙ୍କ ବିଷୟରେ ଧାରାବାହିକ ଭାବେ ଲେଖାମାନ ଲେଖକମାନଙ୍କଠାରୁ ସଂଗ୍ରହ କଲେ ଏହା ଉଚିମନ୍ତ ହୋଇପାରନ୍ତା ।

• • ଏଭଳି ପ୍ରବନ୍ଧମାନ ମିଳିଲେ ତାହା ସବୁ ସଂଖ୍ୟାରେ ନହେଲେ ମଧ୍ୟ କିଛି କିଛି ସ୍ଥାନ ଦେବୁ ।

ଶ୍ରୀ ଚତୁର୍ଭୁଜ ପରିଡ଼ା,
ଗ୍ରାମ–ମଣିକୁଣ୍ଡା (ସାଇଲୋ ବାଲିକୁଦା),
ପୋଷ୍ଟ–ସାଇଲୋ ବଡ଼ବିଲ,
ଥାନା–ବ୍ରାହ୍ମଣସାଇଲୋ, କଟକ ।

• ପ୍ରତି ଜିଲ୍ଲାର ତଥ୍ୟ (ଶିଳ୍ପ, ଖଣି, କୁଟୀର ଶିଳ୍ପ, ସାମାଜିକ ଚଳଣି, ଶିକ୍ଷା, ସଂସ୍କୃତି, ଜନସଂଖ୍ୟା)କୁ ଭିତ୍ତି କରି ପ୍ରତି ସଂଖ୍ୟାରେ ଗୋଟିଏ ଜିଲ୍ଲା ବିଷୟରେ ପ୍ରକାଶ କଲେ ପାଠକମାନେ ପ୍ରତ୍ୟେକ ଜିଲ୍ଲା ବିଷୟରେ ପରିଚିତ ହୋଇପାରନ୍ତେ । ଏହାର ନାମ 'ଜିଲ୍ଲା ପରିକ୍ରମା' ରଖାଯାଉ ।

• • ଗୋଟିଏ ଜିଲ୍ଲାର ସବୁ ତଥ୍ୟକୁ ଭିତ୍ତି କରି ପ୍ରବନ୍ଧ କଲାବେଳେ ପ୍ରବନ୍ଧର କଳେବର ବହୁତ ବଢ଼ିଯିବ । ତେଣୁ ଏ ସବୁକୁ ଭାଗ ଭାଗ କରି ଆମେ ବିଭିନ୍ନ ସଂଖ୍ୟାରେ ଦେଉଥାଉ ।

ଶ୍ରୀ ଅମୂଲ୍ୟ ଚନ୍ଦ୍ର ଦେନା,
ଗ୍ରାମ–ହଜାରୀ ବଗିଚା,
ପୋଷ୍ଟ/ଥାନା–କେନ୍ଦ୍ରାପଡ଼ା,
ଜିଲ୍ଲା–କଟକ–୭୫୪୨୧୧ ।

• ସ୍ୱାଧୀନତା ସଂଗ୍ରାମୀମାନଙ୍କର ଜୀବନୀ ଉତ୍କଳପ୍ରସଙ୍ଗରେ ପ୍ରକାଶ କରାଯିବା ପାଇଁ ଲେଖା ପଠାଇଲେ ପ୍ରକାଶିତ ହେବ କି ?

• • ଧାରାବାହିକ ଭାବେ ସ୍ୱାଧୀନତା ସଂଗ୍ରାମୀମାନଙ୍କ ଜୀବନୀ ପ୍ରକାଶ କରିବା ଅସଙ୍ଗତ ନୁହେଁ । ତେବେ ଜଣେ ଲେଖକଙ୍କର ପ୍ରବନ୍ଧ ଧାରାବାହିକ ଭାବେ ପ୍ରକାଶ ପାଇବା ସଙ୍ଗତ ହେବ ନାହିଁ ।

ଶ୍ରୀରାମଚନ୍ଦ୍ର ଦାସ (ମେଳସ୍), ଶିକ୍ଷୟୀ,
ଗ୍ରାମ-ଶିବ ବିହାର, ମାଧପୁର,
ପୋଷ୍ଟ/ଭାୟା-କେନ୍ଦ୍ରାପଡ଼ା, ଜିଲ୍ଲା-କଟକ-୭୫୪୨୧୨ ।

• ପୂର୍ବେ ଉତ୍କଳ ପ୍ରସଙ୍ଗ ଖଣ୍ଡିଏ କିଣି ପଢ଼ିଲେ ଏଥିରେ ସରକାରଙ୍କର ସମସ୍ତ ନୀତି ଓ ଆଭିମୁଖ୍ୟ ସମ୍ପର୍କରେ ସବିଶେଷ ଜାଣି ହେଉଥିଲା ବର୍ତ୍ତମାନ ମଧ୍ୟ ଚେଷ୍ଟା ସ୍ୱାଗତଯୋଗ୍ୟ ।
ଆଗାମୀ ସଂଖ୍ୟାମାନଙ୍କରେ ପରିବାର କଲ୍ୟାଣ ଅସ୍ତ୍ରୋପଚାର କରିଥିବା ସୁଖୀ ଦମ୍ପତି/ଚକବନ୍ଦୀ କାର୍ଯ୍ୟକ୍ରମ ଉପରେ ଉପକୃତ ହୋଇଥିବା କୃଷୀମାନଙ୍କ ସମ୍ପର୍କେ ସାକ୍ଷାତକାର/ସଚିତ୍ର ବିବରଣୀ ଦିଆଗଲେ ଅନ୍ୟମାନେ ପ୍ରଭାବିତ ହେବେ ନାହିଁ କି ?

• • ପ୍ରସ୍ତାବ ପ୍ରଶଂସନୀୟ, ଆଗାମୀ ସଂଖ୍ୟାଗୁଡ଼ିକରେ ଆପଣଙ୍କ ପ୍ରସ୍ତାବକୁ ରୂପ ଦେବା ପାଇଁ ଯତ୍ନ ନେବୁ ।

ପ୍ରଶାନ୍ତ କୁମାର ମହାନ୍ତି,
ଗ୍ରାମ-ଦେଉଳପାଟଣା (ଦେଉଳପାଟଣା ଯୁବକ ସଂଘ),
ପୋଷ୍ଟ-କଲ୍ୟାଣୀ ନଗର, ଜିଲ୍ଲା-କଟକ-୧୩ ।

• ଉତ୍କଳ ପ୍ରସଙ୍ଗର ମୁଁ ଜଣେ ନିୟମିତ ପାଠକ । ଏହା ଉତ୍କଳର ପ୍ରତ୍ୟେକ ବ୍ୟକ୍ତି ତଥା ଛାତ୍ରଛାତ୍ରୀଙ୍କ ପାଇଁ ଏକ ଉପାଦେୟ ପୁସ୍ତକ । ଯଦି ଏହି ପତ୍ରିକାରେ ଉତ୍କଳର ମହତ୍ତ୍ୱପୂର୍ଣ୍ଣ ସ୍ଥାନଗୁଡ଼ିକୁ ଚିହ୍ନିତ କରାଯାଆନ୍ତା (Orissa Tourism Year) ମାଧ୍ୟମରେ ତାହାହେଲେ ଓଡ଼ିଶା ପୃଥିବୀର ଏକ ମହତ୍ତ୍ୱପୂର୍ଣ୍ଣ ପର୍ଯ୍ୟଟନ କେନ୍ଦ୍ର ହୋଇପାରନ୍ତା ।

• • ମତାମତ ପାଇଁ ଧନ୍ୟବାଦ । ଆପଣଙ୍କ ପ୍ରସ୍ତାବକୁ କାର୍ଯ୍ୟକାରୀ କରିବା ପାଇଁ ଉଦ୍ୟମ କରୁଛୁ ।

ଶ୍ରୀ ଭଗବାନ ପାଢ଼ୀ, ଶିଶୁ ସାହିତ୍ୟିକ,
ଶିକ୍ଷକ, ପଢ଼ୀରପୁର ହାଇସ୍କୁଲ,
ପୋଷ୍ଟ-ପଢ଼ୀରପୁର, ଭାୟା-ଆନନ୍ଦପୁର,
ଜିଲ୍ଲା-କେନ୍ଦୁଝର-୭୫୮୦୨୨ ।

• ମୁଁ ଉତ୍କଳ ପ୍ରସଙ୍ଗର ଗତି ଓ ପ୍ରକୃତିକୁ ପିଲାଦିନୁ ଲକ୍ଷ୍ୟ କରି ଆସିଛି । 'ଉତ୍କଳ ପ୍ରସଙ୍ଗ'ର ମୁଁ ଜଣେ ଅନିୟମିତ ଲେଖକ ଓ ପାଠକ । ଏହା ମାସର ପ୍ରଥମ ସପ୍ତାହରେ ନିୟମିତ ଭାବେ ପ୍ରକାଶିତ ହୋଇ ବୁକ୍‌ଷ୍ଟଲମାନଙ୍କରେ ମିଳିଲେ ଭଲ ହୁଅନ୍ତା । ଏବେ ଏ ପତ୍ରିକା ମନ୍ଦ ହେଉନାହିଁ । ପୂର୍ବେ 'କିଶୋର ଜଗତ'ରେ ଶିଶୁ ସାହିତ୍ୟ ସମ୍ପର୍କରେ ସ୍ୱତନ୍ତ୍ର ପୃଷ୍ଠା ରହୁଥିଲା । ଶିଶୁ ଗଳ୍ପ ଓ ଶିଶୁ କବିତା ପାଇଁ ଅତି କମ୍‌ରେ ୪ଟି ପୃଷ୍ଠା ରଖନ୍ତୁ । ପିଲାଙ୍କ ପାଇଁ ଭାବି ଦେଖନ୍ତୁ । ଏଥିରେ ପ୍ରବୀଣ ନବୀନ ନିର୍ବିଶେଷରେ ସମସ୍ତଙ୍କୁ ସୁଯୋଗ ମିଳୁ ।

• • ପତ୍ର ପତ୍ରିକା ବିକ୍ରେତାମାନେ ଉତ୍କଳ ପ୍ରସଙ୍ଗ ବିକ୍ରି କରିବା ପାଇଁ ବର୍ତ୍ତମାନ ସୁଯୋଗ ଦେବାକୁ ସ୍ଥିର ହୋଇଛି । ସେମାନେ ଏଥିପାଇଁ ଶତକଡ଼ା ପଚିଶି କମିଶନ୍ ମଧ୍ୟ ପାଇବେ । ଏଥିରେ ପ୍ରବୀଣ ଲେଖକ ଓ ନବୀନ ଲେଖକ ସମସ୍ତଙ୍କୁ ସୁଯୋଗ ଦିଆଯାଉଛି ।

## ପ୍ରଶ୍ନ କର୍ତ୍ତାଙ୍କ ପାଇଁ କୁପନ

ପ୍ରଶ୍ନ କର୍ତ୍ତାଙ୍କ ଠିକଣା

ନାମ ..........
ଗ୍ରାମ ..........
ପୋଷ୍ଟ ..........
ଭାୟା .......... ଜିଲ୍ଲା ..........

କେବଳ ୩୧/୭/୧୯୯୨ ପୂର୍ବରୁ ବ୍ୟବହାର ପାଇଁ

ମତାମତ ବା ପ୍ରଶ୍ନ

..........

ସ୍ୱାକ୍ଷର

OGP—MP—PTS (I&PR) 9—10,000—7-71992



କଟକ ଜିଲ୍ଲା ଡୁବୁରି ନିକଟରେ ଯଖପୁରାଠାରେ ପ୍ରସ୍ତାବିତ ଦ୍ୱିତୀୟ ଇସ୍ପାତ କାରଖାନାର ଭୂମିପୂଜା ଉପଲକ୍ଷେ ଆୟୋଜିତ ଏକ ବୈଠକରେ ଜଳସେଚନ ମନ୍ତ୍ରୀ ଶ୍ରୀ ବିଜୟ ମହାପାତ୍ର, ଜନତାଦଳ ସଭାପତି ଶ୍ରୀ ଅଶୋକ ଦାସ, ଯୋଜନା ସମନ୍ୱୟ ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼େଇ, ବୟନ ଶିଳ୍ପ ମନ୍ତ୍ରୀ ଶ୍ରୀ ମୁସ୍ତାଫିକ୍ ଅହମ୍ମଦ ଆଲୋଚନା କରୁଛନ୍ତି ।

VOL XLVIII No. 11 UTKAL PRASANGA Regd. No. 0-05/92
Licence No. C.R.N.P. 5—Licensed to post without Pre-Payment



ବ୍ରହ୍ମପୁରସ୍ଥିତ ଖଲ୍ଲିକୋଟ ମହାବିଦ୍ୟାଳୟ ଷ୍ଟାଡ଼ିୟମଠାରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଜନ୍ମ ଶତବାର୍ଷିକୀ ଉଦ୍‌ଯାପନୀ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଉଦ୍‌ବୋଧନ ।

PRINTED AT ORISSA GOVERNMENT PRESS, CUTTACK-753010

